ଦାଦା ଭଗବାନ ପ୍ରରୂପିତ

# ବର୍ତ୍ତମାନ ତୀର୍ଥଙ୍କର

# ଶ୍ରୀ ସୀମନ୍ଧର ସ୍ୱାମୀ




Odia

ଦାଦା ଭଗବାନ ପ୍ରରୂପିତ

# ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ


ମୂଳ ଗୁଜରାଟୀ ସଙ୍କଳନ : ଡା. ନୀରୂବେନ ଅମୀନ

ଅନୁବାଦ : ମହାତ୍ମାଗଣ

**ପ୍ରକାଶକ :** ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ବିଜ୍ଞାନ ଫାଉଣ୍ଡେସନ୍,
1, ବରୁଣ ଆପାର୍ଟମେଣ୍ଟ, 37, ଶ୍ରୀମାଳି ସୋସାଇଟୀ,
ନବରଙ୍ଗପୁରା ପୋଲିସ ଷ୍ଟେସନ୍ ପାଖ, ନବରଙ୍ଗପୁରା,
ଅହମଦାବାଦ- 380009, ଗୁଜରାଟ, ଇଣ୍ଡିଆ ।
ଫୋନ୍ : +91 793500 2100,+91 93 2866 1166/77



**ପ୍ରଥମ ସଂସ୍କରଣ :** 500 ଖଣ୍ଡ, ଫେବୃଆରୀ 2025

**ଭାବ ମୂଲ୍ୟ :** 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

**ଦ୍ରବ୍ୟ ମୂଲ୍ୟ :** 40 ଟଙ୍କା

**ମୁଦ୍ରକ :** ଅମ୍ବା ମଲ୍ଟିପ୍ରିଣ୍ଟ,
ଏଚ.ବି.କାପଡୀୟା ନ୍ୟୁ ହାଇସ୍କୁଲ ସାମନାରେ,
ଛତ୍ରାଲ-ପ୍ରତାପପୁରା ରୋଡ, ତା. କୋଲଲ,
ଜିଲ୍ଲା-ଗାନ୍ଧୀନଗର-382729,ଗୁଜରାଟ.
ଫୋନ୍ -+91 7935002142

**ISBN :** 978-93-91375-56-0

**Printed in India**

# ତ୍ରିମନ୍ତ୍ର







ନମୋ ଅରିହନ୍ତାଣଂ

ନମୋ ସିଦ୍ଧାଣଂ

ନମୋ ଆୟରିୟାଣଂ

ନମୋ ଉବଜ୍ଝାୟାଣଂ

ନମୋ ଲୋଏ ସବ୍ବସାହୁଣଂ

ଏସୋ ପଞ୍ଚ ନମୁକ୍କାରୋ,

ସବ୍ବ ପାବପ୍ପଣାସଣୋ

ମଙ୍ଗଲାଣଂ ଚ ସବ୍ବେସିଂ,

ପଢମଂ ହବଇ ମଙ୍ଗଲମ୍ ॥୧॥

ॐ ନମୋ ଭଗବତେ ବାସୁଦେବାୟ ॥୨॥

ॐ ନମଃ ଶିବାୟ ॥୩॥

॥ ଜୟ ସଚ୍ଚିଦାନନ୍ଦ ॥



# ‘ଦାଦା ଭଗବାନ’ କିଏ ?

ଜୁନ୍ ୧୯୫୮ରେ ଏକ ସନ୍ଧ୍ୟା, ସମୟ ପାଖାପାଖି ଛ’ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର ‘ଦାଦା ଭଗବାନ’ ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । ‘ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ’ଣ ? ମୁକ୍ତି କ’ଣ ?’ ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସମ୍ପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ’ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

‘ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ’, ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ ‘ଦାଦା ଭଗବାନ କିଏ ?’ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, ‘‘ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ ‘ଏ.ଏମ୍. ପଟେଲ’ ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ ‘ଦାଦା ଭଗବାନ’ ଅଟନ୍ତି । ଦାଦା ଭଗବାନ ତ’ ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ ‘ଏଠାରେ’ ମୋ ଭିତରେ ସମ୍ପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।’’

# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଈ ଦେଶାଈଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଁଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଲ୍‌ଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ଼ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ବୋଧହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଯଦି ଏଠାରେ ଆଶୟ(ହେତୁ)କୁ ବୁଝି ପଢ଼ାଯିବ, ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ପାଇଁ ଲେଖାଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି *ଇଟାଲିକ୍ସ* ରେ ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ । କିନ୍ତୁ ସେହି ଶବ୍ଦର ସମାନାର୍ଥବୋଧକ ଶବ୍ଦ ବନ୍ଧନୀରେ ଏବଂ ପୁସ୍ତକର ଶେଷରେ ମଧ୍ୟ ଦିଆଯାଇଛି ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।



# ସମ୍ପାଦକୀୟ

ମୋକ୍ଷ ପ୍ରାପ୍ତିର ଇଚ୍ଛା କାହାକୁ ନ ହୁଏ ? କିନ୍ତୁ ପ୍ରାପ୍ତିର ମାର୍ଗ ମିଳିବା କଠିନ ଅଟେ ଏବଂ ମୋକ୍ଷଦାତାଙ୍କ ବ୍ୟତୀତ ସେହି ମାର୍ଗରେ କିଏ ନେଇଯାଇ ପାରିବ ?

ପୂର୍ବରେ ମଧ୍ୟ କେତେ ଜ୍ଞାନୀପୁରୁଷ ଏବଂ ତୀର୍ଥଙ୍କର ହୋଇ ସାରିଛନ୍ତି ଏବଂ ଅନେକ ଲୋକଙ୍କୁ ମୋକ୍ଷର ଧ୍ୟେୟ ସିଦ୍ଧ କରାଇ ଯାଇଛନ୍ତି । ବର୍ତ୍ତମାନ ତରଣତାରଣ ଜ୍ଞାନୀପୁରୁଷ 'ଦାଦାଶ୍ରୀ'ଙ୍କ ଦ୍ୱାରା ଏହି ମାର୍ଗ ଖୋଲାଅଛି, ଅକ୍ରମ ମାର୍ଗ ମାଧ୍ୟମରେ ! କ୍ରମରେ ସିଢ଼ି ଚଢ଼ିବା ଏବଂ ଅକ୍ରମରେ ଲିଫ୍ଟ ଦ୍ୱାରା ଚଢ଼ିବା, ଏଥିରୁ ସରଳ କେଉଁଟା ? ସିଢ଼ି ନା ଲିଫ୍ଟ ? ଏହି କାଳରେ ଲିଫ୍ଟ ହିଁ ପୋଷାଇବ ନା, ସମସ୍ତଙ୍କୁ !

'ଏହି କାଳରେ ଏହି କ୍ଷେତ୍ରରୁ ସିଧା ମୋକ୍ଷ ନାହିଁ', ଶାସ୍ତ୍ର ଏପରି କୁହେ । କିନ୍ତୁ ଭାୟା(Via) ମହାବିଦେହ କ୍ଷେତ୍ରରେ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ଦର୍ଶନ ଦ୍ୱାରା ମୋକ୍ଷପ୍ରାପ୍ତିର ମାର୍ଗ ଖୋଲା ହିଁ ଅଛି, ବହୁ ସମୟରୁ ! ସଂପୂଜ୍ୟ ଦାଦାଶ୍ରୀ ସେହି ମାର୍ଗରେ ମୁମୁକ୍ଷୁମାନଙ୍କୁ ମୋକ୍ଷରେ ପହଞ୍ଚାନ୍ତି ଏବଂ ସେହି (ମୋକ୍ଷ) ପ୍ରାପ୍ତିର ବିଶ୍ୱାସ ନିଶ୍ଚିତରୂପେ ମୁମୁକ୍ଷୁମାନଙ୍କୁ ହୋଇଥାଏ ।

ଏହି କାଳରେ ଏହି କ୍ଷେତ୍ରରେ ବର୍ତ୍ତମାନ ତୀର୍ଥଙ୍କର ନାହାନ୍ତି, କିନ୍ତୁ ଏହି କାଳରେ ମହାବିଦେହ କ୍ଷେତ୍ରରେ ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ ବିରାଜମାନ ଅଛନ୍ତି ଏବଂ ଭରତ କ୍ଷେତ୍ରର ମୋକ୍ଷାର୍ଥୀ ଜୀବଙ୍କୁ ମୋକ୍ଷପ୍ରାପ୍ତ କରାଉଛନ୍ତି । ଜ୍ଞାନୀ ସେହି ମାର୍ଗରେ ପହଞ୍ଚି ଅନ୍ୟଙ୍କୁ ସେହି ମାର୍ଗ ଦେଖାନ୍ତି ।

ପ୍ରତ୍ୟକ୍ଷ-ପ୍ରକଟ ତୀର୍ଥଙ୍କରଙ୍କ ପରିଚୟ ପାଇବା, ତାଙ୍କ ପ୍ରତି ଭକ୍ତି ଉତ୍ପନ୍ନ ହେବା ଏବଂ ଦିନ-ରାତି ତାଙ୍କ ସମ୍ପର୍କ ସ୍ଥାପନା କରି, ଶେଷରେ ତାଙ୍କର ପ୍ରତ୍ୟକ୍ଷ ଦର୍ଶନ ପାଇ କେବଳଜ୍ଞାନ ପ୍ରାପ୍ତ ହେବା, ଏହା ହିଁ ମୋକ୍ଷର ପ୍ରଥମରୁ ଅନ୍ତିମ ମାର୍ଗ, ଜ୍ଞାନୀ ଏପରି କୁହନ୍ତି ।

ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ଆରାଧନା ଯେତେ ଅଧିକ ହେବ, ସେତେ ତାଙ୍କ ସହିତ ସମ୍ବନ୍ଧ ନିରନ୍ତର ବିଶେଷ ରୂପରେ ରହିବ । ଏହାଦ୍ୱାରା ତାଙ୍କ ସହିତ ଋଣାନୁବନ୍ଧ ଗାଢ଼ ହେବ । ଶେଷରେ ପରମ ଅବଗାଢ଼ ପର୍ଯ୍ୟନ୍ତ ପହଞ୍ଚି, ତାଙ୍କ ଚରଣ କମଳରେ ସ୍ଥାନପ୍ରାପ୍ତି ପାଇବାର ମୋହର ଲାଗେ !

ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ପ୍ରଥମେ ତ ଏହି ଭରତ କ୍ଷେତ୍ରର

ସମସ୍ତ ଋଣାନୁବନ୍ଧରୁ ମୁକ୍ତି ପ୍ରାପ୍ତ କରିବା ଆବଶ୍ୟକ ଏବଂ ତାହା ଅକ୍ରମଜ୍ଞାନ ଦ୍ୱାରା ପ୍ରାପ୍ତ ଆତ୍ମଜ୍ଞାନ ଏବଂ ପାଞ୍ଚ ଆଜ୍ଞାର ପାଳନ ଦ୍ୱାରା ସମ୍ଭବ ହୋଇ ପାରିବ ! ଏବଂ ତାହା ସହ ଶ୍ରୀ  ସୀମନ୍ଧର ସ୍ୱାମୀଙ୍କ ଅନନ୍ୟ ଭକ୍ତି, ଦିନ-ରାତି ଆରାଧନା କରୁ କରୁ ତାଙ୍କ ସହିତ ଋଣାନୁବନ୍ଧ ସ୍ଥାପିତ ହୁଏ, ଯାହା ଏହି ଦେହର ତ୍ୟାଗ ହେବା କ୍ଷଣି, ସେଠାକୁ ଯିବାର ରାସ୍ତା ତିଆରି କରି ଦିଏ !

ପ୍ରକୃତିର ନିୟମ ଏପରି ଅଟେ ଯେ ଆନ୍ତରିକ ପରିଣତି ଯେପରି ଥାଏ, ସେହି ଅନୁସାରେ ପରବର୍ତ୍ତୀ ଜନ୍ମ ସ୍ଥିର ହୁଏ । ଏବେ ଭରତ କ୍ଷେତ୍ରରେ ପଞ୍ଚମ *'ଆରା'*(କାଳଚକ୍ରର ଏକ ଦ୍ୱାଦଶ ଅଂଶ) ଚାଲୁଅଛି । ସବୁ ମଣିଷ କଳିଯୁଗୀ ଅଟନ୍ତି । ଅକ୍ରମ ବିଜ୍ଞାନ ପ୍ରାପ୍ତ କରି ଯଦି ଜ୍ଞାନୀଙ୍କ ଆଜ୍ଞା ପାଳନ କରିବାକୁ ଲାଗନ୍ତି, ସେବେଠାରୁ ଆନ୍ତରିକ ପରିଣତି ଏକଦମ୍ ଉଚ୍ଚସ୍ତରରେ ପହଞ୍ଚିଯାଏ । ସେମାନେ କଳିଯୁଗୀରୁ ସତ୍ୟଯୁଗୀ ହୋଇଯାନ୍ତି । ଭିତରେ ଚତୁର୍ଥ *'ଆରା'* ର ପରିଣତି ରହିଥାଏ । ବାହାରେ ପଞ୍ଚମ ଏବଂ ଭିତରେ ଚତୁର୍ଥ ଆରା ! ଆନ୍ତରିକ ପରିଣତିରେ ପରିବର୍ତ୍ତନ ହେବାଦ୍ୱାରା ଯେଉଁଠି ଚତୁର୍ଥ *'ଆରା'* ଚାଲୁଥାଏ, ମୃତ୍ୟୁ ପରେ ଜୀବ ସେଠାକୁ ଟାଣି ହୋଇ ଚାଲିଯାଏ ଏବଂ ସେଥିରେ ମଧ୍ୟ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ଭକ୍ତି କରିବା ଦ୍ୱାରା ପ୍ରଥମରୁ ତାଙ୍କ ସହିତ ଋଣାନୁବନ୍ଧ ବାନ୍ଧି ହୋଇ ସାରିଥାଏ । ସେଥିପାଇଁ ସେ ଜୀବ ତାଙ୍କ ନିକଟକୁ,ତାଙ୍କ ଚରଣକୁ ଟାଣି ହୋଇଯାଏ ! ଏ ସବୁ ନିୟମ ଅଟେ, ପ୍ରକୃତିର !

ସଂପୂଜ୍ୟ ଦାଦାଶ୍ରୀ ସର୍ବଦା କହୁଥିଲେ ଯେ ଯେବେ ମୂଳ ନାୟକ ସୀମନ୍ଧର ସ୍ୱାମୀଙ୍କ ମନ୍ଦିର ସବୁ ଜାଗାରେ ନିର୍ମାଣ ହେବ, ଭବ୍ୟ ମନ୍ଦିର ନିର୍ମାଣ ହେବ, ଘରେ ଘରେ ସୀମନ୍ଧର ସ୍ୱାମୀଙ୍କ ପୂଜା-ଆରତୀ ହେବ, ସେତେବେଳେ ଦୁନିଆର ନକ୍ସା କିଛି ଅଲଗା ହୋଇଯାଇଥିବ !

ଭଗବାନ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ବିଷୟରେ ଅଳ୍ପ କହୁ କହୁ ଲୋକଙ୍କ ହୃଦୟରେ ତାଙ୍କ ପ୍ରତି ଭକ୍ତି ଆରମ୍ଭ ହୋଇଯାଏ ! ଦିନ-ରାତି ସୀମନ୍ଧର ସ୍ୱାମୀଙ୍କୁ ଦାଦା ଭଗବାନଙ୍କ ସାକ୍ଷୀରେ ନମସ୍କାର କରିବ । ପ୍ରତିଦିନ ସୀମନ୍ଧର ସ୍ୱାମୀଙ୍କ ଆରତୀ ଏବଂ ଚାଳିଶ ଥର ନମସ୍କାର  କରିବ ।

ସାଧାରଣରୂପେ ପରମ କୃପାଳୁ ଶ୍ରୀ ଦାଦା ଭଗବାନ ସବୁ ମୁମୁକ୍ଷୁମାନଙ୍କୁ ନିମ୍ନଲିଖିତ ନମସ୍କାର ବିଧି ଦ୍ୱାରା ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ସହ ଅନୁସନ୍ଧାନ କରାଉଥିଲେ ।

'ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ବର୍ତ୍ତମାନ ମହାବିଦେହ କ୍ଷେତ୍ରରେ ବିଚରଣ କରୁଥିବା ତୀର୍ଥଙ୍କର ଭଗବାନ ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି ।'

ଏହା ଶବ୍ଦ ସନ୍ଧାନ ନୁହେଁ, କିନ୍ତୁ ସେହି ସମୟରେ ମୁମୁକ୍ଷୁମାନଙ୍କୁ ଏପରି ଅନୁଭୂତି ହୁଏ ଯେପରି ନିଜେ ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କରୁଛନ୍ତି, ତାହାର ସନ୍ଧାନ ଅଟେ ।

'ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ' ଏପରି ଶବ୍ଦପ୍ରୟୋଗ ଏଥିପାଇଁ କରାଯାଇଛି ଯେ, ଯେପର୍ଯ୍ୟନ୍ତ ମୁମୁକ୍ଷୁଙ୍କର ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ସହ ସିଧା ତାର ଯୋଡ଼ି ନ ହୋଇଛି, ସେପର୍ଯ୍ୟନ୍ତ ଯାହାର ତାଙ୍କ ସହିତ ନିରନ୍ତର ତାର ଯୋଡି ହୋଇ ରହିଛି, ଏପରି ଜ୍ଞାନୀପୁରୁଷ ଶ୍ରୀ ଦାଦା ଭଗବାନଙ୍କ ମାଧ୍ୟମରେ, ଆମେ ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ଆମ ନମସ୍କାର ପହଞ୍ଚାଉଛେ । ଯାହାର ଫଳ ପ୍ରତ୍ୟକ୍ଷ କରାଯିବା ନମସ୍କାର ଯେତିକି ହିଁ ମିଳେ । ଉଦାହରଣ ସ୍ୱରୂପ ଆମକୁ କୌଣସି ସନ୍ଦେଶ ଆମେରିକା ପହଞ୍ଚାଇବାର ଅଛି, କିନ୍ତୁ ତାହା ଆମେ ସ୍ୱୟଂ ପହଞ୍ଚାଇପାରିବା ନାହିଁ, ସେଥିପାଇଁ ଆମେ ସେହି ସନ୍ଦେଶ ଡାକ ବିଭାଗକୁ ଦେଇ ନିଶ୍ଚିନ୍ତ ହୋଇଯାଉ । ଏହି ଦାୟିତ୍ୱ ଡାକ ବିଭାଗର ଅଟେ ଏବଂ ସେ ତାହାକୁ ତୁଲାଇ ଥାଏ ମଧ୍ୟ । ଏହିପରି ପୂଜ୍ୟ ଦାଦାଶ୍ରୀ ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ଆମ ସନ୍ଦେଶ ପହଞ୍ଚାଇବାର ଦାୟିତ୍ୱ ନିଜ ଉପରେ ନିଅନ୍ତି ।

ଦାଦା ଭଗବାନଙ୍କୁ ସାକ୍ଷୀ ରଖି ନମସ୍କାର ବିଧି କରିବ । ଯେଉଁମାନଙ୍କୁ ସମ୍ୟକ ଦର୍ଶନ ପ୍ରାପ୍ତ ହୋଇଛି, ସେ ସମକିତୀ ମହାତ୍ମା ଯଦି ବୁଝି-ବିଚାରୀ ଏହି ନମସ୍କାର ବିଧି କରିବେ ତେବେ ତାହାର ଫଳ କିଛି ଅଲଗା ପ୍ରକାରର ମିଳେ ! ମନ୍ତ୍ର ଉଚ୍ଚାରଣ କରିବା ସମୟରେ ଗୋଟିଏ-ଗୋଟିଏ ଅକ୍ଷର ଧ୍ୟାନପୂର୍ବକ ପଢ଼ିବା ଉଚିତ, ଏହାଦ୍ୱାରା ଚିତ୍ତ ସମ୍ପୂର୍ଣ୍ଣତଃ ଶୁଦ୍ଧ ରହେ । ସମ୍ପୂର୍ଣ୍ଣ ଚିତ୍ତ ଶୁଦ୍ଧିପୂର୍ବକ ନମସ୍କାର ଅର୍ଥାତ ସ୍ୱୟଂ ନିଜକୁ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ମୂର୍ତ୍ତି ସ୍ୱରୂପକୁ ପ୍ରତ୍ୟକ୍ଷ ନମସ୍କାର କରୁଥିବାର ଦେଖିବା । ପ୍ରତ୍ୟେକ ନମସ୍କାର ସହିତ ସାଷ୍ଟାଙ୍ଗ ବନ୍ଦନ କରୁଥିବାର ଦେଖାଯିବା ଉଚିତ । ଯେବେ ପ୍ରଭୂଙ୍କ ମୂର୍ତ୍ତ ସ୍ୱରୂପ ଦେଖାଯିବ ଏବଂ ତା ସହ ପ୍ରଭୂଙ୍କ ଅମୂର୍ତ୍ତ କେବଳଜ୍ଞାନ ସ୍ୱରୂପ, ଯାହା ମୂର୍ତ୍ତ ସ୍ୱରୂପରୁ ଭିନ୍ନ ଅଟେ, ଏହା ମଧ୍ୟ ବୁଝା ପଡ଼ିଯାଏ, ତେବେ ବୁଝିବ ଯେ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ନିକଟରେ ପହଞ୍ଚିଗଲେ । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ସହିତ ସନ୍ଧାନର କଥା ଶୁଣିବା ମାତ୍ରେ ଅନେକ ଲୋକଙ୍କୁ ଏପରି ଅନୁଭୂତି ହୁଏ ।

ଆଶା କରୁଛୁ ଯେ, ଯାହାଙ୍କୁ ଦାଦାଶ୍ରୀଙ୍କ ପ୍ରତ୍ୟକ୍ଷ ସଂଯୋଗ ନ ମିଳିଛି, ସେମାନଙ୍କୁ ଏହି ପୁସ୍ତିକା ପରୋକ୍ଷ ରୂପରେ ଅନୁସନ୍ଧାନର ଭୂମିକା ସ୍ପଷ୍ଟ କରିଦେବ । ଯେଉଁ ବ୍ୟକ୍ତି ପ୍ରକୃତରେ ମୋକ୍ଷର ଇଚ୍ଛୁକ ହୋଇଥିବ, ତା'ର ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ସହିତ ଅବଶ୍ୟ ସମ୍ପର୍କ ହୋଇଯିବ । ଏପରି ପୂର୍ବେ କେବେ ଉତ୍ପନ୍ନ ହୋଇ ନଥିବା, ସେହିପରି ଜବରଦସ୍ତ ଆକର୍ଷଣ ଯଦି ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ପ୍ରତି ଉତ୍ପନ୍ନ ହେବ, ତେବେ ବୁଝିନେବ ଯେ ପ୍ରଭୂଙ୍କ ଚରଣରେ ସ୍ଥାନ ପାଇବାର ସଙ୍କେତ ଆସିଲାଣି ।

ସୀମନ୍ଧର ସ୍ୱାମୀଙ୍କ ପ୍ରାର୍ଥନା, ବିଧି ଏବଂ ସୀମନ୍ଧର ସ୍ୱାମୀଙ୍କ ଚରଣରେ ସଦା ମସ୍ତକ ରଖି, ନିରନ୍ତର ତାଙ୍କ ଅନନ୍ୟ ଶରଣର ଭାବନାରେ ରହିବ । ସଂପୂଜ୍ୟ ଦାଦାଶ୍ରୀ ବାରମ୍ବାର କହିଛନ୍ତି ଯେ, 'ମୁଁ ମଧ୍ୟ ସୀମନ୍ଧର ସ୍ୱାମୀଙ୍କ ପାଖକୁ ଯାଉଛି ଏବଂ ତୁମେ ମଧ୍ୟ ସେଠାରେ ପହଞ୍ଚିବାର ପ୍ରସ୍ତୁତି କର । ଏହା ବିନା ଏକାବତାରୀ ଅବା ଦୁଇ ଅବତାରୀ ହେବା କଷ୍ଟସାଧ୍ୟ ଅଟେ !' ଯଦି ଆସନ୍ତା ଜନ୍ମ ପୁଣି ଥରେ ଏହି ଭରତଭୂମିରେ ହେବ ତେବେ ଏଠି ଭୀଷଣ ପଞ୍ଚମ *ଆରା* ଚାଲୁଥିବ । ସେଠି ମୋକ୍ଷର କଥା ତ ଗୋଟେ ପଟେ ରହିଲା କିନ୍ତୁ ପୁଣି ଥରେ ମନୁଷ୍ୟ ଜନ୍ମ ମିଳିବା ମଧ୍ୟ ଦୁର୍ଲଭ ଅଟେ ! ଏପରି ସଂଯୋଗରେ ଏବେଠାରୁ ସାବଧାନ ହୋଇ, ଜ୍ଞାନୀଙ୍କ କହିଥିବା ମାର୍ଗରେ ଚାଲି, ଏକାବତାରୀ ପଦର ହିଁ ପ୍ରାପ୍ତି କରି ନେବା ! ବାରମ୍ବାର ଏପରି ମଉକା ମିଳିବାର ନାହିଁ । ବହି ଚାଲିଥିବା ପାଣିର ପ୍ରବାହକୁ ପୁଣିଥରେ ଧରିହେବ ନାହିଁ । ବିତିଯାଇଥିବା ସମୟକୁ ମଧ୍ୟ ପୁଣି ଅଣାଯାଇ ପାରିବ ନାହିଁ । ଯିଏ ହାତକୁ ଆସିଥିବା ମଉକା ହରେଇ ଦିଏ, ତା'କୁ ଆଉଥରେ ମଉକା ପାଇବାର ଅବସର ମିଳେ ନାହିଁ । ସେଥିପାଇଁ ଆଜିଠୁ ହିଁ ଯୋଡି ହୋଇଯିବା ଏବଂ ଗାଇ ଚାଲିବା..... *'ସୀମନ୍ଧର ସ୍ୱାମୀ ନା ଅସୀମ ଜୟ ଜୟକାର ହୋ !'*

ସୀମନ୍ଧର ସ୍ୱାମୀ କିଏ ? କେଉଁଠି ଅଛନ୍ତି ? କିପରି ଅଛନ୍ତି ? ତାଙ୍କ ପଦ କ'ଣ ? ତାହା ବ୍ୟତୀତ ତାଙ୍କର ମହତ୍ତ୍ୱ କେତେ ? ତାଙ୍କ ବିଷୟରେ ଯେତିକି ସମ୍ଭବ ହୋଇପାରିବ, ସେତିକ ସମସ୍ତ ତଥ୍ୟ ପୂଜ୍ୟ ଦାଦାଶ୍ରୀଙ୍କ ସ୍ୱମୁଖରୁ ବାହାରି ଥିଲା, ତାହା ଏଠାରେ ସଂକ୍ଷିପ୍ତ ସଙ୍କଳନ ହୋଇ ପ୍ରକାଶିତ ହୋଇଅଛି । ଯାହା ମୋକ୍ଷମାର୍ଗୀଙ୍କ ପାଇଁ ଆରାଧନା ହେତୁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ !

**-ଡା. ନୀରୂବେନ ଅମୀନ**

# ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ଜୀବନ ଚରିତ୍ର

ଆମ ଭାରତ ବର୍ଷର ଐଶାନ୍ୟ(ଉତ୍ତର-ପୂର୍ବ) କୋଣରେ କୋଟି-କୋଟି କିଲୋମିଟର ଦୂର ପରେ ଜମ୍ବୁଦୀପର ମହାବିଦେହ କ୍ଷେତ୍ର ଆରମ୍ଭ ହୁଏ । ସେଥିରେ ୩୨ ବିଜୟ (କ୍ଷେତ୍ର) ଅଛି । ଏହି ବିଜୟ ମଧ୍ୟରେ ଅଷ୍ଟମ ବିଜୟ 'ପୁଷ୍କଳାବତୀ' ଅଟେ । ତାହାର ରାଜଧାନୀ ଶ୍ରୀ ପୁଣ୍ଡରିକଗିରୀ ଅଟେ । ଏହି ନଗରୀରେ ଗତ ୨୪ ତୀର୍ଥଙ୍କର୍ରଙ୍କ ମଧ୍ୟରୁ ସପ୍ତଦଶ ତୀର୍ଥଙ୍କର ଶ୍ରୀ କୁନ୍ଥୁନାଥ ଭଗବାନଙ୍କ ଶାସନକାଳ ଏବଂ ଅଷ୍ଟାଦଶ ତୀର୍ଥଙ୍କର ଶ୍ରୀ ଅରହନାଥଜୀଙ୍କ ଜନ୍ମ ପୂର୍ବରୁ ଶ୍ରୀ ସୀମନ୍ଧର ସ୍ୱାମୀ ଭଗବାନଙ୍କ ଜନ୍ମ ହୋଇଥିଲା । ତାଙ୍କ ପିତା ଶ୍ରୀ ଶ୍ରେୟାଂସ ପୁଣ୍ଡରିକଗିରୀ ନଗରୀର ରାଜା ଥିଲେ । ଭଗବାନଙ୍କ ମାତାଙ୍କ ନାମ ସାତ୍ୟକୀ ଥିଲା ।

ଯଥା ସମୟରେ ମହାରାଣୀ ସାତ୍ୟକୀ ଅଦ୍ୱିତୀୟ ରୂପ ଏବଂ ଲାବଣ୍ୟ ଥିବା, ସର୍ବାଙ୍ଗ- ସୁନ୍ଦର ସ୍ୱର୍ଣ୍ଣକାନ୍ତି ଯୁକ୍ତ ଏବଂ ବୃଷଭ କୌଳିକ ଚିହ୍ନ ଥିବା ପୁତ୍ରକୁ ଜନ୍ମ ଦେଲେ । (ବୀର ସମ୍ୱତ ପଞ୍ଜିକା ଗଣନା ଅନୁସାରେ ଚୈତ୍ର କୃଷ୍ଣପକ୍ଷ ଦଶମୀର ମଧ୍ୟରାତ୍ରି ସମୟରେ) ଶିଶୁ ଜିନେଶ୍ୱରଙ୍କ ଜନ୍ମ ମତିଜ୍ଞାନ, ଶ୍ରୁତଜ୍ଞାନ ଏବଂ ଅବଧିଜ୍ଞାନ ସହିତ ହୋଇଥିଲା । ତାଙ୍କ ଦେହ ପାଞ୍ଚଶହ ଧନୁସ୍ ଉଚ୍ଚତା ସହ ସମାନ ଅଟେ । ରାଜକୁମାରୀ ଶ୍ରୀ ରୁକ୍ମିଣୀଙ୍କୁ ପ୍ରଭୁଙ୍କ ଅର୍ଧାଙ୍ଗିନୀ ହେବାର ପରମ ସୌଭାଗ୍ୟ ପ୍ରାପ୍ତ ହେଲା ।

ଭରତକ୍ଷେତ୍ରରେ ବିଂଶତମ ତୀର୍ଥଙ୍କର ଶ୍ରୀ ମୁନିସୁବ୍ରତ ସ୍ୱାମୀ ଏବଂ ଏକବିଂଶ ତୀର୍ଥଙ୍କର ଶ୍ରୀ ନେମୀନାଥଜୀଙ୍କ ପ୍ରକଟ କାଳ ମଧ୍ୟରେ, ଅଯୋଧ୍ୟାରେ ରାଜା ଦଶରଥଙ୍କ ଶାସନକାଳ ସମୟରେ ଏବଂ ରାମଚନ୍ଦ୍ରଜୀଙ୍କ ଜନ୍ମ ପୂର୍ବରୁ ଶ୍ରୀ ସୀମନ୍ଧର ସ୍ୱାମୀ ମହାଭିନିଷ୍କ୍ରମଣ(ଅର୍ଥାତ୍ ସମସ୍ତ ସାଂସାରିକ ବସ୍ତୁ ତ୍ୟାଗ ହୋଇଯିବା) ଉଦୟଯୋଗ ଦ୍ୱାରା ଫାଲ୍ଗୁନ ଶୁକ୍ଳପକ୍ଷ ତୃତୀୟା ଦିନ ଦୀକ୍ଷା ଅଙ୍ଗୀକାର କଲେ । ଦୀକ୍ଷା ଅଙ୍ଗୀକାର କରିବା ମାତ୍ରେ ତାଙ୍କୁ ଚତୁର୍ଥ *ମନଃପର୍ଯ୍ୟାୟ* ଜ୍ଞାନ ପ୍ରାପ୍ତ ହେଲା । ଦୋଷ କର୍ମର *ନିର୍ଜରା* ହେବା ମାତ୍ରେ ହଜାର ବର୍ଷର ଛଦ୍ମସ୍ଥ କାଳ ପରେ ଅବଶିଷ୍ଟ ଚାରି ଘାତି କର୍ମର କ୍ଷୟ କରି ଚୈତ୍ର ଶୁକ୍ଳପକ୍ଷର ତ୍ରୟୋଦଶୀ ଦିନ ଭଗବାନ କେବଳଜ୍ଞାନୀ ଏବଂ କେବଳଦର୍ଶନୀ ହେଲେ । ତାଙ୍କ ଦର୍ଶନ ମାତ୍ରେ ହିଁ ଜୀବ ମୋକ୍ଷଗାମୀ ହେବାକୁ ଲାଗିଲେ ।

ଶ୍ରୀ ସୀମନ୍ଧର ସ୍ୱାମୀ ପ୍ରଭୁଙ୍କ କଲ୍ୟାଣ ଯଜ୍ଞର ନିମିତ୍ତମାନଙ୍କ ମଧ୍ୟରେ ଚୌରାଅଶୀ ଗଣଧର, ଦଶଲକ୍ଷ କେବଳଜ୍ଞାନୀ ମହାରାଜା, ଶହେ କୋଟି ସାଧୁ, ଶହେ କୋଟି ସାଧ୍ୱୀ, ନଅଶହ କୋଟି ଶ୍ରାବକ ଏବଂ ନଅଶହ କୋଟି ଶ୍ରାବିକା ଅଛନ୍ତି । ତାଙ୍କ ଶାସନ ରକ୍ଷକ ଭାବେ ଯକ୍ଷଦେବ ଶ୍ରୀ ଚାନ୍ଦ୍ରାୟଣଦେବ ଏବଂ ଯକ୍ଷିଣୀଦେବୀ ଶ୍ରୀ ପାଞ୍ଚାଙ୍ଗୁଳି ଦେବୀ ଅଛନ୍ତି ।

ଆସନ୍ତା ୨୪ ତୀର୍ଥଙ୍କରଙ୍କ ମଧ୍ୟରେ ଅଷ୍ଟମ ତୀର୍ଥଙ୍କର ଶ୍ରୀ ଉଦୟସ୍ୱାମୀଙ୍କ ନିର୍ବାଣ ପଶ୍ଚାତ ଏବଂ ନବମ ତୀର୍ଥଙ୍କର ଶ୍ରୀ ପେଢ଼ାଳସ୍ୱାମୀଙ୍କ ଜନ୍ମ ପୂର୍ବରୁ ଶ୍ରୀ ସୀମନ୍ଧର ସ୍ୱାମୀ ଏବଂ ଅନ୍ୟ ୧୯ ବିହରମାନ ତୀର୍ଥଙ୍କର ଭଗବନ୍ତ ଶ୍ରାବଣ ଶୁକ୍ଳପକ୍ଷ ତୃତୀୟାର ଅଲୌକିକ ଦିନରେ ଦୁଇ ଲକ୍ଷ ପଞ୍ଚସ୍ତରୀ ବର୍ଷର ଆୟୁଷ ପୂର୍ଣ୍ଣ କରି ନିର୍ବାଣପଦ ପ୍ରାପ୍ତ କରିବେ ।



# ବର୍ତ୍ତମାନ ତୀର୍ଥଙ୍କର
# ଶ୍ରୀ ସୀମନ୍ଧର ସ୍ୱାମୀ !

## ବର୍ତ୍ତମାନ ତୀର୍ଥଙ୍କରଙ୍କ ଭକ୍ତି ଦ୍ୱାରା 'ମୋକ୍ଷ' !

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀ କିଏ, ଏହା ବୁଝାଇବା ପାଇଁ କୃପା କରନ୍ତୁ !

**ଦାଦାଶ୍ରୀ :** ସୀମନ୍ଧର ସ୍ୱାମୀ ବର୍ତ୍ତମାନ ତୀର୍ଥଙ୍କର *ସାହେବ* ଅଟନ୍ତି । ସେ ଏହି ପୃଥିବୀ ଠାରୁ ବାହାର ଅଲଗା କ୍ଷେତ୍ର, ମହାବିଦେହ କ୍ଷେତ୍ରରେ ତୀର୍ଥଙ୍କର *ସାହେବ* ଅଟନ୍ତି ! ଋଷଭଦେବ ଭଗବାନ ଥିଲେ, ମହାବୀର ଭଗବାନ ଥିଲେ... ସେମାନଙ୍କ ପରି ସୀମନ୍ଧର ସ୍ୱାମୀ ତୀର୍ଥଙ୍କର ଅଟନ୍ତି ।

ତିନି ପ୍ରକାରର ତୀର୍ଥଙ୍କର ଥାଆନ୍ତି । ଅତୀତକାଳର ତୀର୍ଥଙ୍କର, ବର୍ତ୍ତମାନକାଳର ତୀର୍ଥଙ୍କର ଏବଂ ଭବିଷ୍ୟକାଳର ତୀର୍ଥଙ୍କର ! ଏମାନଙ୍କ ମଧ୍ୟରୁ ଅତୀତକାଳର ତ ହୋଇସାରିଛନ୍ତି । ତାଙ୍କୁ ସ୍ମରଣ କଲେ ଆମକୁ ପୂଣ୍ୟଫଳ ମିଳିବ । ତାହା ବ୍ୟତୀତ ଏବେ ଯାହାର ଶାସନ ଚାଲିଥାଏ, ତାଙ୍କ ଆଜ୍ଞାରେ ରହିଲେ ଧର୍ମ ଉତ୍ପନ୍ନ ହୁଏ । ତାହା ମୋକ୍ଷ ଆଡ଼କୁ ନେଇ ଯାଇଥାଏ !

କିନ୍ତୁ ଯଦି କେବେ ବର୍ତ୍ତମାନ ତୀର୍ଥଙ୍କରଙ୍କୁ ସ୍ମରଣ କରିବା, ତେବେ ତାହାର କଥା ହିଁ ଅଲଗା ! ବର୍ତ୍ତମାନର ହିଁ ମୂଲ୍ୟ, ନଗଦ ଟଙ୍କା ଯଦି ହୋଇଥିବ, ତାହାର ମୂଲ୍ୟ ଥାଏ । ଯିଏ ପରେ ଆସିବେ ସେ ଟଙ୍କା ଭାବୀ(ଭବିଷ୍ୟ) ! ଆଉ ଯିଏ ଗଲେ ସେ ତ ଗଲେ ! ଅତଃ ନଗଦ କଥା ଆମକୁ ଦରକାର ! ସେଥିପାଇଁ ନଗଦ ର ପରିଚୟ କରାଇ ଦେଉଛି ନା ! ଏବଂ ଏ ସବୁ କଥା ନଗଦ ଅଟେ । ଦିସ୍ ଇଜ୍ ଦ କ୍ୟାଶ୍ ବ୍ୟାଙ୍କ ଅଫ୍ ଡିଭାଇନ୍ ସଲ୍ୟୁଶନ୍ (This is the cash bank of divine solution) ! ନଗଦ ଦରକାର, ଉଧାର ଚଳିବ ନାହିଁ । ଆଉ ଚବିଶ ତୀର୍ଥଙ୍କରଙ୍କୁ ମୁଁ ବି ନମସ୍କାର କରୁଛି ନା !

*ସଂଯତି(ସଂଯମ)ପୁରୁଷ* ଚବିଶ ତୀର୍ଥଙ୍କରଙ୍କୁ କ'ଣ କହୁଥିଲେ ? ଅତୀତ ତୀର୍ଥଙ୍କର, ଅର୍ଥାତ ଯିଏ ଅତୀତକାଳରେ ହୋଇଯାଇଛନ୍ତି । ଆମେ ବର୍ତ୍ତମାନ ତୀର୍ଥଙ୍କରଙ୍କୁ ଖୋଜି ବାହାର କରିବା ଆବଶ୍ୟକ । ଅତୀତକାଳର ତୀର୍ଥଙ୍କରଙ୍କ ଭକ୍ତି ଦ୍ୱାରା ସଂସାରରେ ଆମର ପ୍ରଗତି ହେବ, କିନ୍ତୁ ମୋକ୍ଷଫଳ ପ୍ରାପ୍ତ ହେବ ନାହିଁ । ମୋକ୍ଷଫଳ ତ ଆଜି ଯିଏ ଉପସ୍ଥିତ ଅଛନ୍ତି, ସେ ହିଁ ଦେଇ ପାରିବେ ।

## 'ନମୋ ଅରିହନ୍ତାଣଂ' ଆଜି କିଏ ?

ଲୋକେ ଯେଉଁ ନବକାର ମନ୍ତ୍ର ଉଚ୍ଚାରଣ କରନ୍ତି, ସେମାନେ କେଉଁ ଦୃଷ୍ଟିରେ କରନ୍ତି ? ମୁଁ ସେମାନଙ୍କୁ ପଚାରିଲି, ତେବେ ମୋତେ କହିଲେ, 'ଚବିଶ ତୀର୍ଥଙ୍କର, ସେମାନେ ହିଁ ଅରିହନ୍ତ ଅଟନ୍ତି !' ମୁଁ କହିଲି, 'ତୁମେ ଯଦି ସେମାନଙ୍କୁ ଅରିହନ୍ତ କହିବ ତେବେ ପୁଣି ସିଦ୍ଧ କାହାକୁ କହିବ ? ସେମାନେ ଅରିହନ୍ତ ଥିଲେ, ଏବେ ତ ସିଦ୍ଧ ହୋଇ ସାରିଲେଣି । ତା'ହେଲେ ଏବେ ଅରିହନ୍ତ କିଏ ? ଏମାନେ ଯେଉଁ ଅରିହନ୍ତ ମାନୁଛନ୍ତି, ସେମାନେ କାହାକୁ 'ନମୋ ଅରିହନ୍ତାଣଂ' ମାନୁଛନ୍ତି ? 'ନମୋ ଅରିହନ୍ତାଣଂ' କୁହନ୍ତି ନା ?

ଏ ଯେଉଁ ଚବିଶ ତୀର୍ଥଙ୍କର ଅଛନ୍ତି ନା, ସେମାନେ ଅରିହନ୍ତ କୁହାଯାନ୍ତି, କିନ୍ତୁ ଯେପର୍ଯ୍ୟନ୍ତ ସେମାନେ ଜୀବନ୍ତ ଥିଲେ, ସେପର୍ଯ୍ୟନ୍ତ ଅରିହନ୍ତ । ଏବେ ସେମାନେ ତ ନିର୍ବାଣ ହୋଇ ମୋକ୍ଷରେ ଗଲେ, ଏଣୁ ସିଦ୍ଧ କୁହାଯିବ । ଅର୍ଥାତ ସିଦ୍ଧାଣଂ ପଦରେ ଆସିଲେ । ତେବେ ଅରିହନ୍ତାଣଂ କେହି ନାହାନ୍ତି । ଯେଉଁମାନେ ଚବିଶ ତୀର୍ଥଙ୍କରଙ୍କୁ ହିଁ ଅରିହନ୍ତ ମାନୁଛନ୍ତି, ସେମାନଙ୍କୁ ଜଣା ନାହିଁ ଯେ ସେମାନେ ତ ସିଦ୍ଧ ହୋଇ ସାରିଲେଣି । ଅର୍ଥାତ ଏହିପରି ଭୁଲ ଚାଲି ରହିଛି । ଏଥିପାଇଁ ନବକାର ମନ୍ତ୍ର ଫଳ ଦେଉ ନାହିଁ । ପୁଣି ମୁଁ ସେମାନଙ୍କୁ ବୁଝାଇଲି ଯେ ସୀମନ୍ଧର ସ୍ୱାମୀ ଏବେ ଅରିହନ୍ତ ଅଟନ୍ତି । ଯିଏ ବର୍ତ୍ତମାନ ଅଛନ୍ତି, ଜୀବନ୍ତ ଅଟନ୍ତି, ସେ ଅରିହନ୍ତ ।

ଯେଉଁମାନେ ତୀର୍ଥଙ୍କର ହୋଇଗଲେ, ସେମାନେ କହି ଯାଇଛନ୍ତି ଯେ 'ଏବେ ଭରତ କ୍ଷେତ୍ରରେ ଚବିଶି ବନ୍ଦ ହେଉଅଛି, ଏବେ ତୀର୍ଥଙ୍କର ହେବେ ନାହିଁ । କିନ୍ତୁ ମହାବିଦେହ କ୍ଷେତ୍ରରେ ତୀର୍ଥଙ୍କର ଅଛନ୍ତି, ତାଙ୍କର ଭକ୍ତି କରିବ ! ସେଠାରେ ବର୍ତ୍ତମାନ ତୀର୍ଥଙ୍କର ଅଛନ୍ତି ।' କିନ୍ତୁ ଏହା ତ ଲୋକଙ୍କ ଲକ୍ଷ୍ୟରେ ହିଁ ନାହିଁ ଆଉ ସେହି ଚବିଶଙ୍କୁ ହିଁ ତୀର୍ଥଙ୍କର କହୁଛନ୍ତି, ସମସ୍ତେ !! ନହେଲେ ଭଗବାନ ତ ସବୁକିଛି କହିକି ଯାଇଛନ୍ତି ।

ମହାବୀର ଭଗବାନ ସବୁକିଛି ସ୍ପଷ୍ଟ କରିଥିଲେ ! ମହାବୀର ଭଗବାନ ଜାଣିଥିଲେ

ଯେ ଏହା ପରେ ଅରିହନ୍ତ ରହିବେ ନାହିଁ । କାହାର ଭକ୍ତି କରିବେ ଏ ଲୋକେ ? ଏଥିପାଇଁ ସେ ସ୍ପଷ୍ଟ କରିଥିଲେ ଯେ ମହାବିଦେହ କ୍ଷେତ୍ରରେ କୋଡ଼ିଏ ତୀର୍ଥଙ୍କର ଅଛନ୍ତି ଏବଂ ସେମାନଙ୍କ ମଧ୍ୟରେ ଶ୍ରୀ ସୀମନ୍ଧର ସ୍ୱାମୀ ବି ଅଛନ୍ତି । ଏହା କହିଥିଲେ, ସେଥିପାଇଁ ପରେ ମାନ୍ୟ ହେଲା । ମାର୍ଗଦର୍ଶନ ମହାବୀର ଭଗବାନଙ୍କର, ପରେ କୁନ୍ଦକୁନ୍ଦାଚାର୍ଯ୍ୟଙ୍କୁ ମଧ୍ୟ ଏହି ମାର୍ଗ ମିଳିଥିଲା ।

ଅରିହନ୍ତ ଅର୍ଥାତ୍ ବର୍ତ୍ତମାନ ଅସ୍ତିତ୍ୱ ଥିବା ଦରକାର । ଯାହାଙ୍କର ନିର୍ବାଣ ହୋଇସାରିଛି, ତା'ଙ୍କୁ ତ ସିଦ୍ଧ କୁହାଯିବ । ନିର୍ବାଣ ପଶ୍ଚାତ୍, ସେମାନଙ୍କୁ ଅରିହନ୍ତ କହିପାରିବା ନାହିଁ ।

## ନବକାର ମନ୍ତ୍ର କେବେ ଫଳିବ ?

ସେଥିପାଇଁ କହିବାକୁ ପଡ଼ିଲା ଯେ 'ଅରିହନ୍ତଙ୍କୁ ନମସ୍କାର କର ।' ତେବେ ପଚାରନ୍ତି, ଯେ 'ଏବେ ଅରିହନ୍ତ କେଉଁଠି ଅଛନ୍ତି ?' ମୁଁ କହିଲି, 'ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କର । ସୀମନ୍ଧର ସ୍ୱାମୀ ବ୍ରହ୍ମାଣ୍ଡରେ ଅଛନ୍ତି । ସେ ଆଜି ଅରିହନ୍ତ ଅଟନ୍ତି । ଏଥିପାଇଁ ତାଙ୍କୁ ନମସ୍କାର କର ! ସେ ଉପସ୍ଥିତ ଅଛନ୍ତି । ଅରିହନ୍ତଙ୍କ ରୂପରେ ଥିବା ଉଚିତ, ତେବେଯାଇ ଆମକୁ ଫଳ ମିଳେ ।' ଅତଃ ସମଗ୍ର ବ୍ରହ୍ମାଣ୍ଡରେ ଯେଉଁଠି ବି ଅରିହନ୍ତ ଥିବେ, ତାଙ୍କୁ ନମସ୍କାର କରୁଛି । ଏପରି ବୁଝି କହିଲେ ତାହାର ଫଳ ବହୁତ ସୁନ୍ଦର ମିଳେ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ବର୍ତ୍ତମାନ ବିଚରଣ କରୁଥିବା କୋଡ଼ିଏ ତୀର୍ଥଙ୍କର ତ ଅଛନ୍ତି ନା ?

**ଦାଦାଶ୍ରୀ :** ହଁ, ସେହି ବର୍ତ୍ତମାନ କୋଡ଼ିଏଙ୍କୁ ଯଦି ଅରିହନ୍ତ ମାନିବ ତେବେ ତୁମ ନବକାର ମନ୍ତ୍ର ଫଳିବ, ନହେଲେ ଫଳିବ ନାହିଁ । ଅର୍ଥାତ ସୀମନ୍ଧର ସ୍ୱାମୀଙ୍କ ଭକ୍ତି ଆବଶ୍ୟକ ଅଟେ, ତେବେ ମନ୍ତ୍ର ଫଳିବ । ଅନେକ ଲୋକ ଏହି କୋଡ଼ିଏ ତୀର୍ଥଙ୍କରଙ୍କ ବିଷୟରେ ନ ଜାଣିବା ଯୋଗୁଁ ଅଥବା 'ତାଙ୍କର ଆଉ ଆମର କ'ଣ ନେବା-ଦେବା ?' ଏପରି ଭାବି ଏହି ଚବିଶ ତୀର୍ଥଙ୍କରଙ୍କୁ ହିଁ 'ଅରିହନ୍ତ ଅଟନ୍ତି' ଏପରି ମାନୁଛନ୍ତି । ଆଜି ବର୍ତ୍ତମାନରେ (ତୀର୍ଥଙ୍କର) ରହିଥିବା ଉଚିତ, ତେବେଯାଇ ଫଳ ପ୍ରାପ୍ତ ହେବ ! ଏପରି କେତେ ସାରା ଭୁଲ ହେବା କାରଣରୁ ଏହି କ୍ଷତି ହେଉଅଛି ।

ନବକାର ମନ୍ତ୍ର ଉଚ୍ଚାରଣ କରିବା ସମୟରେ ସୀମନ୍ଧର ସ୍ୱାମୀ ଖିଆଲରେ ରହିବା ଉଚିତ, ତେବେ ତୁମ ନବକାର ମନ୍ତ୍ର ଶୁଦ୍ଧ ରୂପରେ ହେଲା କୁହାଯିବ ।

ଲୋକେ ମୋତେ କୁହନ୍ତି ଯେ ଆପଣ ସୀମନ୍ଧର ସ୍ୱାମୀଙ୍କ ପ୍ରାର୍ଥନା କାହିଁକି

କରାଉଛନ୍ତି ? ଚବିଶ ତୀର୍ଥଙ୍କରଙ୍କ କାହିଁକି କରାଉ ନାହାଁନ୍ତି ? ମୁଁ କହିଲି ଚବିଶ ତୀର୍ଥଙ୍କରଙ୍କ ତ କରୁଅଛୁ ହିଁ କିନ୍ତୁ ମୁଁ ରୀତି ଅନୁସାରେ କରେ ଏବଂ ସୀମନ୍ଧର ସ୍ୱାମୀଙ୍କର ଅଧିକ କରେ, କାରଣ ସେ ବର୍ତ୍ତମାନ ତୀର୍ଥଙ୍କର ଅଟନ୍ତି ଏବଂ 'ନମୋ ଅରିହନ୍ତାଣଂ' ତାଙ୍କୁ ହିଁ ପହଞ୍ଚେ ।

## ଇଏ ତ ପ୍ରକଟ, ପ୍ରତ୍ୟକ୍ଷ, ସାକ୍ଷାତ୍ ଭଗବାନ !

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀ ପ୍ରକଟ କୁହାଯିବେ ?

**ଦାଦାଶ୍ରୀ :** ହଁ, ସେ ପ୍ରକଟ କୁହାଯାନ୍ତି । ପ୍ରତ୍ୟକ୍ଷ, ସାକ୍ଷାତ୍ ଅଟନ୍ତି । ଦେହଧାରୀ ଅଟନ୍ତି ଏବଂ ଏବେ ମହାବିଦେହ କ୍ଷେତ୍ରରେ ତୀର୍ଥଙ୍କର ରୂପେ ବିଚରଣ କରୁଛନ୍ତି ।

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀ ମହାବିଦେହରେ ଅଛନ୍ତି ତେବେ ଆମପାଇଁ ପ୍ରକଟ କିପରି କୁହାଯିବେ ?

**ଦାଦାଶ୍ରୀ :** କଲିକତାରେ ଯଦି ସୀମନ୍ଧର ସ୍ୱାମୀ ଥିବେ, ତାଙ୍କୁ ଦେଖି ନଥିବା, ତଥାପି ପ୍ରକଟ କୁହାଯିବେ, ଏହା ସେହିପରି ଅଟେ, ମହାବିଦେହ କ୍ଷେତ୍ରର ।

## ପ୍ରତ୍ୟକ୍ଷ-ପରୋକ୍ଷ ସ୍ତୁତିରେ ଫରକ

**ପ୍ରଶ୍ନକର୍ତ୍ତା :** ଆମେ ମହାବୀର ଭଗବାନଙ୍କ ସ୍ତୁତି କରିବୁ, ପ୍ରାର୍ଥନା କରିବୁ ଏବଂ ସୀମନ୍ଧର ସ୍ୱାମୀଙ୍କ ସ୍ତୁତି କରିବୁ, ପ୍ରାର୍ଥନା କରିବୁ ତେବେ ଉଭୟର ଫଳରେ କ'ଣ ଫରକ ପଡ଼ିବ ?

**ଦାଦାଶ୍ରୀ :** ଭଗବାନ ମହାବୀରଙ୍କ ସ୍ତୁତି ସେ ନିଜେ ତ ଶୁଣୁ ନାହାନ୍ତି ତଥାପି ଯଦି କେହି ସୀମନ୍ଧର ସ୍ୱାମୀଙ୍କ ନାମ ନେଉ ନଥିବ, କିନ୍ତୁ ମହାବୀର ଭଗବାନଙ୍କ ନାମ ନେଉଥିବ ତେବେ ମଧ୍ୟ ଭଲ । କିନ୍ତୁ ମହାବୀର ଭଗବାନଙ୍କର ଶୁଣିବ କିଏ ? ସେ ନିଜେ ତ ସିଦ୍ଧଗତିରେ ଯାଇ ବସିଛନ୍ତି !! ତାଙ୍କର ଏଠି କିଛି ନେବା-ଦେବା ନାହିଁ ! ଏହା ତ ଆମେ ନିଜେ ରୂପକ ବନାଇ ସ୍ଥାପିତ କରିବାରେ ଲାଗିଛେ । ସେ ଏବେ ତୀର୍ଥଙ୍କର ବି ନୁହନ୍ତି । ସେ ତ ଏବେ ସିଦ୍ଧ ହିଁ ଅଟନ୍ତି । ଏହି ସୀମନ୍ଧର ସ୍ୱାମୀ ହାଜର ଅଛନ୍ତି, ସେ ହିଁ ଫଳ ଦେବେ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଯେଉଁ ଫଳ ମିଳେ ତାହା, 'ନମୋ ଅରିହନ୍ତାଣଂ' ର ହିଁ ଫଳ ମିଳେ, ଏପରି ହେଲା ନା ? 'ନମୋ ସିଦ୍ଧାଣଂ'ର କିଛି ଫଳ ନାହିଁ ?

**ଦାଦାଶ୍ରୀ :** ଅନ୍ୟ କିଛି ଫଳ ମିଳେ ନାହିଁ । ଏମିତି, ଯଦି ଆମେ ସ୍ଥିର କରିନେବା ଯେ 'ଭାଇ, କେଉଁ ଷ୍ଟେସନ୍ ଯିବାର ଅଛି ?' ତେବେ କହେ, 'ଭାଇ, ଆଣନ୍ଦ(ଗୁଜରାଟର ଏକ ଷ୍ଟେସନ୍) ଯିବାର ଅଛି ।' ତେବେ ଆଣନ୍ଦ ଆମ ଲକ୍ଷ୍ୟରେ ରହେ । ସେହିପରି ଏହା

(ନମୋ ସିଦ୍ଧାଣଂ) ମୋକ୍ଷରେ ଯିବାର ଅଛି, ସିଦ୍ଧଗତିରେ ଯିବାର ଅଛି, ତାହା ଲକ୍ଷ୍ୟରେ ରହେ । ବାକି ଅରିହନ୍ତଙ୍କୁ ହିଁ ସର୍ବଶ୍ରେଷ୍ଠ ଉପକାରୀ କୁହାଯାଏ । ଅରିହନ୍ତ କାହାକୁ କହିବା ? ଯିଏ ହାଜର ଥିବେ, ତାଙ୍କୁ । ହାଜର ନଥିବେ, ତାଙ୍କୁ ଅରିହନ୍ତ କୁହାଯାଏ ନାହିଁ । ପ୍ରତ୍ୟକ୍ଷ-ପ୍ରକଟ ହୋଇଥିବା ଦରକାର । ସେଥିପାଇଁ ଏବେ ସୀମନ୍ଧର ସ୍ୱାମୀଙ୍କ ଉପରକୁ ନିଜର ସମ୍ପୂର୍ଣ୍ଣ ଲକ୍ଷ୍ୟ ନେଇଯାଅ । ସେମିତି ତ କୋଡ଼ିଏ ତୀର୍ଥଙ୍କର ଅଛନ୍ତି, କିନ୍ତୁ ଅନ୍ୟ କେତେ ନାମ ଆମକୁ ମନେ ରହିବ ? ତାହା ଅପେକ୍ଷା ଇଏ ଯିଏ ମହତ୍ତ୍ୱ ଅଟନ୍ତି, ଆମ ହିନ୍ଦୁସ୍ତାନ ପାଇଁ ବିଶେଷ ରୂପରେ ମହତ୍ତ୍ୱପୂର୍ଣ୍ଣ ଅଟନ୍ତି, ସେ ହେଉଛନ୍ତି ସୀମନ୍ଧର ସ୍ୱାମୀ, ଏବେ ତାଙ୍କ ଉପରକୁ ନିଜ ଲକ୍ଷ୍ୟ ନେଇଯାଅ ଏବଂ ତାଙ୍କ ପାଇଁ ଜୀବନ ଅର୍ପିତ କର ।

## ଦୃଷ୍ଟି, ଭଗବାନଙ୍କ ଦର୍ଶନର

**ପ୍ରଶ୍ନକର୍ତ୍ତା :** ମହାବିଦେହ କ୍ଷେତ୍ରରେ ସୀମନ୍ଧର ସ୍ୱାମୀଙ୍କ ପ୍ରବୃତ୍ତି କ'ଣ ?

**ଦାଦାଶ୍ରୀ :** ତାଙ୍କର କି ପ୍ରବୃତ୍ତି ? ବାସ୍, ଭଗବାନ ! ଲୋକେ ଦର୍ଶନ କରନ୍ତି ଏବଂ ସେ ବୀତରାଗ ଭାବରେ ବାଣୀ କୁହନ୍ତି ।

**ପ୍ରଶ୍ନକର୍ତ୍ତା :** *ଦେଶନା* (ତୀର୍ଥଙ୍କରଙ୍କ ମୁଖନିଃସୃତ ବାଣୀ) ?

**ଦାଦାଶ୍ରୀ :** ହଁ, ବାସ୍, *ଦେଶନା* ଦିଅନ୍ତି ।

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀ ମହାବିଦେହ କ୍ଷେତ୍ରରେ ଆଉ କ'ଣ କରନ୍ତି ?

**ଦାଦାଶ୍ରୀ :** ତାଙ୍କୁ କିଛି ବି କରିବାକୁ ନଥାଏ । କର୍ମର ଉଦୟ ଅନୁସାରେ, ବାସ୍ । ନିଜର ଉଦୟକର୍ମ ଯାହା କରାଏ, ସେହିପରି କରନ୍ତି । ତାଙ୍କ ନିଜର ଇଗୋଇଜମ୍ (ଅହଙ୍କାର) ସମ୍ପୂର୍ଣ୍ଣ ବିଲୟ ହୋଇ ସାରିଛି ଏବଂ ସାରା ଦିନ ଜ୍ଞାନରେ ହିଁ ରୁହନ୍ତି । ଯେପରି ମହାବୀର ଭଗବାନ ରହୁଥିଲେ, ସେହିପରି । ତାଙ୍କ ଫଲୋୟର୍ସ (ଅନୁଗାମୀ) ବହୁତ ଅଛନ୍ତି ।

## ମାତ୍ର ଦର୍ଶନରୁ ମୋକ୍ଷ

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀଙ୍କ ଦର୍ଶନର ବର୍ଣ୍ଣନା କରନ୍ତୁ ।

**ଦାଦାଶ୍ରୀ :** ସୀମନ୍ଧର ସ୍ୱାମୀଙ୍କ ବୟସ ଏହି ସମୟରେ ଦେଢ଼ ଲକ୍ଷ ବର୍ଷ ଅଟେ । ସେ ଋଷଭଦେବ ଭଗବାନଙ୍କ ପରି । ଋଷଭଦେବ ଭଗବାନ ସାରା ବ୍ରହ୍ମାଣ୍ଡର ଭଗବାନ କୁହାଯାନ୍ତି । ସେହିପରି ସୀମନ୍ଧର ସ୍ୱାମୀ ମଧ୍ୟ ସାରା ବ୍ରହ୍ମାଣ୍ଡର ଭଗବାନ କୁହାଯାନ୍ତି । ସେ ଆମର ଏଠି ନାହାଁନ୍ତି, କିନ୍ତୁ ଅନ୍ୟ ଭୂମିରେ ଅଛନ୍ତି । ସେଠାକୁ ମନୁଷ୍ୟ ଯାଇ ପାରିବ ନାହିଁ । ଜ୍ଞାନୀ ନିଜ ଶକ୍ତି ସେଠାକୁ ପଠାନ୍ତି । ତାହା ପ୍ରଶ୍ନ ପଚାରି ପୁଣି ଫେରି ଆସେ । ସେଠାକୁ ସ୍ଥୁଳ

ଶରୀରରେ ଯାଇ ପାରିବା ନାହିଁ କିନ୍ତୁ ସେଠାରେ ଜନ୍ମ ହେଲେ ଯାଇ ପାରିବା ।

ଆମର ଏଠି ଭରତକ୍ଷେତ୍ରରେ ତୀର୍ଥଙ୍କର ଜନ୍ମ ହେଉଥିଲେ, କିନ୍ତୁ ଅଢ଼େଇ ହଜାର ବର୍ଷ ହେଲାଣି ବନ୍ଦ ଅଛି ! ତୀର୍ଥଙ୍କର ଅର୍ଥାତ ଚରମ, 'ଫୁଲ୍ ମୁନ୍' (ପୂର୍ଣ୍ଣ ଚନ୍ଦ୍ର) ! କିନ୍ତୁ ସେଠି ମହାବିଦେହ କ୍ଷେତ୍ରରେ ତୀର୍ଥଙ୍କର ନିରନ୍ତର ଜନ୍ମ ନେଉଥାନ୍ତି । ସୀମନ୍ଧର ସ୍ୱାମୀ ଆଜି ସେଠି ବିଦ୍ୟମାନ ଅଛନ୍ତି ।

**ପ୍ରଶ୍ନକର୍ତ୍ତା :** ସେ ଅନ୍ତର୍ଯ୍ୟାମୀ ଅଟନ୍ତି କି ?

**ଦାଦାଶ୍ରୀ :** ସେ ଆମକୁ ଦେଖନ୍ତି । ଆମେ ତାଙ୍କୁ ଦେଖି ପାରିବା ନାହିଁ । ସେ ସାରା ଦୁନିଆ ଦେଖି ପାରନ୍ତି ।

ସୀମନ୍ଧର ସ୍ୱାମୀ ଅନ୍ୟ କ୍ଷେତ୍ରରେ ଅଛନ୍ତି । ଏ ସବୁ ବୁଦ୍ଧି ବାହାରର କଥା, କିନ୍ତୁ ମୋ ଜ୍ଞାନରେ ଆସିଛି । ଏହା ଲୋକଙ୍କୁ ବୁଝା ପଡ଼େ ନାହିଁ । କିନ୍ତୁ ମୋତେ ଏକଜାକ୍ଟ (ଯେମିତି କୁ ସେମିତି) ବୁଝା ପଡୁଛି । ତାଙ୍କୁ ଦର୍ଶନ କରିବା ଦ୍ୱାରା ଲୋକଙ୍କର ବହୁତ କଲ୍ୟାଣ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ତାଙ୍କ ଦେହ କିପରି ? ମନୁଷ୍ୟ ପରି ? ଆମ ପରି ?

**ଦାଦାଶ୍ରୀ :** ଦେହ ଆମ ପରି ଅଟେ, ମନୁଷ୍ୟ ପରି ହିଁ ଦେହ ।

**ପ୍ରଶ୍ନକର୍ତ୍ତା :** ତାଙ୍କ ଦେହର ଆକାର କେତେ ?

**ଦାଦାଶ୍ରୀ :** ଆକାର ବହୁତ ବିଶାଳ ଅଟେ । ହାଇଟ୍ ବହୁତ ଉଚ୍ଚ ଅଟେ । ତାଙ୍କ ଆୟୁଷ ଲମ୍ବା ଏବଂ ସବୁ କଥା ହିଁ ଅଲଗା ଅଟେ ।

## ମହାବିଦେହ କ୍ଷେତ୍ର କେଉଁଠି ? କିପରି ?

**ପ୍ରଶ୍ନକର୍ତ୍ତା :** ଯେଉଁଠି ସୀମନ୍ଧର ସ୍ୱାମୀ ବିଚରଣ କରୁଛନ୍ତି, ସେହି ମହାବିଦେହ କ୍ଷେତ୍ର କେଉଁଠି ଅଛି ?

**ଦାଦାଶ୍ରୀ :** ତାହା ତ ଆମର ଏହି ଭରତ କ୍ଷେତ୍ରଠୁ ବିଲ୍‌କୁଲ ଅଲଗା, ଐଶାନ୍ୟ ଦିଗରେ ଅଛି । ସବୁ କ୍ଷେତ୍ର ଅଲଗା ଅଲଗା ଅଟେ । ସେଠାକୁ ଏମିତି ସହଜରେ ଯାଇ ହେବ ନାହିଁ ।

**ପ୍ରଶ୍ନକର୍ତ୍ତା :** ମହାବିଦେହ କ୍ଷେତ୍ର, ତାହା ଆମ ଭରତ କ୍ଷେତ୍ରଠୁ ଅଲଗା ଗଣାଯାଏ ?

**ଦାଦାଶ୍ରୀ :** ହଁ, ଅଲଗା । କେବଳ ମହାବିଦେହ କ୍ଷେତ୍ର ହିଁ ଏପରି ଅଟେ, ଯେଉଁଠି ତୀର୍ଥଙ୍କର ନିରନ୍ତର ଜନ୍ମ ନେଉଥାନ୍ତି ଆଉ ଆମ କ୍ଷେତ୍ରରେ ନିଶ୍ଚିତ ସମୟରେ ହିଁ ତିର୍ଥଙ୍କର

ଜନ୍ମ ନିଅନ୍ତି, ପରେ ହୁଅନ୍ତି ନାହିଁ । ଆମର ଏଠି କିଛି ସମୟ ପାଇଁ ତୀର୍ଥଙ୍କର ହୁଅନ୍ତି ନାହିଁ । କିନ୍ତୁ ଏବେ ଯେଉଁ ଏହି ସୀମନ୍ଧର ସ୍ୱାମୀ ଅଛନ୍ତି, ସେ ଆମ ପାଇଁ ଅଛନ୍ତି । ସେ ଏବେ ଲମ୍ବା ସମୟ ପର୍ଯ୍ୟନ୍ତ ରହିବେ ।

## ଭୂଗୋଳ, ମହାବିଦେହ କ୍ଷେତ୍ରର

**ପ୍ରଶ୍ନକର୍ତ୍ତା :** ଏବେ ମହାବିଦେହ କ୍ଷେତ୍ର ବିଷୟରେ ଟିକିଏ ବିସ୍ତାରରେ କୁହନ୍ତୁ । ଏତେ *ଯୋଜନ* ଦୂରରେ ମେରୁପର୍ବତ, ଏ ଯେଉଁ କଥା ଶାସ୍ତ୍ରରେ ଲେଖାଅଛି, ତାହା ସତ ?

**ଦାଦାଶ୍ରୀ :** ସତ । ସେଥିରେ ଫରକ ନାହିଁ । ତଥ୍ୟପୂର୍ଣ୍ଣ କଥା ଅଟେ । ହଁ, କେତେ ବର୍ଷର ଆୟୁଷ ଏବଂ ଏବେ କେତେ ବର୍ଷ ରହିବେ, ତାହା ସବୁ ସୁନିୟୋଜିତ ଅଟେ । ପୂରା ବ୍ରହ୍ମାଣ୍ଡ ଅଛି, ଏଥିରେ ମଧଲୋକ ଅଛି ଆଉ ସେଥିରେ ପନ୍ଦରଟି କ୍ଷେତ୍ର ଅଛି । ମଧଲୋକ ଗୋଲାକାର ଅଟେ । କିନ୍ତୁ ଲୋକଙ୍କୁ ଏହି ଅଲଗା କଥା କିଛି ବୁଝା ପଡ଼ିବ ନାହିଁ । କାରଣ ଗୋଟିଏ ବାତାବରଣରୁ ଅନ୍ୟ ଏକ ବାତାବରଣକୁ ଯାଇ ହେବ ନାହିଁ, ଏପରି କ୍ଷେତ୍ର ଅଛି ଭିତରେ । ମନୁଷ୍ୟ ଜନ୍ମ ହେବା ଯୋଗ୍ୟ ଏବଂ ମନୁଷ୍ୟ ରହିବା ଯୋଗ୍ୟ ପନ୍ଦର କ୍ଷେତ୍ର ଅଛି । ଏଥିରୁ ଗୋଟିଏ ହେଉଛି ଏହି ଆମ ଭୂମି(ପୃଥିବୀ) । ଏହା ବ୍ୟତୀତ ଅନ୍ୟ ଚଉଦ ଟି ଅଛି । ସେଥିରେ ମଧ ଆମ ପରି ହିଁ ମନୁଷ୍ୟ ଅଛନ୍ତି । ଆମର ଏଠି କଳିଯୁଗୀ (ମନୁଷ୍ୟ) ଅଛନ୍ତି ଏବଂ ସେଠି ସତ୍ୟଯୁଗୀ (ମନୁଷ୍ୟ) ଅଛନ୍ତି । କେଉଁଠି କଳିଯୁଗ ଚାଲିଛି ଏବଂ କେଉଁଠି ସତ୍ୟଯୁଗ ମଧ ଚାଲିଛି । ଏହିପରି ମନୁଷ୍ୟ ଅଛନ୍ତି ଏବଂ ସେଠି, ମହାବିଦେହ କ୍ଷେତ୍ରରେ ତ ଏବେ ସୀମନ୍ଧର ସ୍ୱାମୀ ସ୍ୱୟଂ ବିଦ୍ୟମାନ ଅଛନ୍ତି । ଏବେ ତାଙ୍କର ବୟସ ଦେଢ଼ଲକ୍ଷ ବର୍ଷ ଆଉ ଲକ୍ଷେ ପଚିଶ ହଜାର ବର୍ଷ ପର୍ଯ୍ୟନ୍ତ ରହିବେ । ଭଗବାନ ରାମଚନ୍ଦ୍ରଙ୍କ ସମୟରେ ତାଙ୍କୁ ଦେଖିଥିଲେ । ତାଙ୍କ ପୂର୍ବରୁ ହିଁ ସେ ଜନ୍ମ ନେଇଥିଲେ । ରାମଚନ୍ଦ୍ର ଜ୍ଞାନୀ ଥିଲେ । ତାଙ୍କ ଜନ୍ମ ଏଠାରେ ହୋଇଥିଲା କିନ୍ତୁ ସେ ସୀମନ୍ଧର ସ୍ୱାମୀଙ୍କୁ ଦେଖି ପାରିଥିଲେ । ସୀମନ୍ଧର ସ୍ୱାମୀ ତ ତାଙ୍କ ପୂର୍ବରୁ, ବହୁତ ପୂର୍ବରୁ ଅଛନ୍ତି । ଏହି ଯେଉଁ ସୀମନ୍ଧର ସ୍ୱାମୀ ଅଛନ୍ତି ତାଙ୍କୁ ଜଗତ କଲ୍ୟାଣ କରିବାର ଅଛି ।

## ଶ୍ରୀ ସୀମନ୍ଧର ସ୍ୱାମୀ, ଭରତ କ୍ଷେତ୍ରର କଲ୍ୟାଣର ନିମିତ୍ତ

**ପ୍ରଶ୍ନକର୍ତ୍ତା :** ମହାବିଦେହ କ୍ଷେତ୍ରରେ ଏବେ ତୀର୍ଥଙ୍କର ବିରାଜମାନ ଅଛନ୍ତି । ସେହିପରି ଅନ୍ୟ କୌଣସି କ୍ଷେତ୍ରରେ କେହି ତୀର୍ଥଙ୍କର ବିରାଜମାନ ଅଛନ୍ତି ?

**ଦାଦାଶ୍ରୀ :** ଏହି ପାଞ୍ଚ ଭରତ କ୍ଷେତ୍ରରେ ଏବଂ ପାଞ୍ଚ ଐରାବତ କ୍ଷେତ୍ରରେ ବର୍ତ୍ତମାନ

ତୀର୍ଥଙ୍କର ବିରାଜମାନ ନାହାନ୍ତି । ଅନ୍ୟ ପାଞ୍ଚଟି ମହାବିଦେହ କ୍ଷେତ୍ର ଅଛି, ସେଠି ଏହି ସମୟରେ ଚତୁର୍ଥ *ଆରା* (ଆରା ଅର୍ଥାତ୍ କାଳଚକ୍ରର ଏକ ଦ୍ୱାଦଶ ଅଂଶ) ଚାଲିଛି, ସେଠାରେ ତୀର୍ଥଙ୍କର ବିଚରଣ କରୁଛନ୍ତି । ସେଠି ସର୍ବଦା ଚତୁର୍ଥ *ଆରା* ରହିଥାଏ ଆଉ ଆମର ଏଠି ତ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ ଏବଂ ଷଷ୍ଠ – ଏହିପରି *ଆରା* ବଦଳି ଚାଲେ ।

**ପ୍ରଶ୍ନକର୍ତ୍ତା :** ଏଠାରେ ତୀର୍ଥଙ୍କର କେବେ ହୁଅନ୍ତି ?

**ଦାଦାଶ୍ରୀ :** ଏଠି ତୃତୀୟ-ଚତୁର୍ଥ *ଆରା* ରେ ତୀର୍ଥଙ୍କର ହୁଅନ୍ତି !

**ପ୍ରଶ୍ନକର୍ତ୍ତା :** ଆଉ ତୀର୍ଥଙ୍କର, ଆମର ଏଠି ହିନ୍ଦୁସ୍ତାନରେ ହିଁ ହୁଅନ୍ତି, ଅନ୍ୟ କେଉଁଠି ହୁଅନ୍ତି ନାହିଁ ?

**ଦାଦାଶ୍ରୀ :** ଏହି ଭୂମିରେ ! ଏହି ଭୂମି, ହିନ୍ଦୁସ୍ତାନରେ ହିଁ ! ଏହି ଭୂମିରେ ତୀର୍ଥଙ୍କର ହୁଅନ୍ତି, ଅନ୍ୟ ଜାଗାରେ ଜନ୍ମ ହୁଅନ୍ତି ହିଁ ନାହିଁ । ଚକ୍ରବର୍ତ୍ତୀ ମଧ୍ୟ ଏହି ଭୂମିରେ ହୁଅନ୍ତି, ଅର୍ଦ୍ଧଚକ୍ରୀ ମଧ୍ୟ ଏହି ଭୂମିରେ ହୁଅନ୍ତି । ତେଷଠି(୬୩) ଶଲାକା ପୁରୁଷ ସମସ୍ତେ ଏଇଠି ହୁଅନ୍ତି ।

**ପ୍ରଶ୍ନକର୍ତ୍ତା :** ଏହି ଭୂମିର କିଛି ମହତ୍ତ୍ୱତା ଥିବ ?

**ଦାଦାଶ୍ରୀ :** ଏହି ଭୂମି ବହୁତ ଉଚ୍ଚ ଗଣାଯାଏ !

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀଙ୍କର ହିଁ ପୂଜନ କ'ଣ ପାଇଁ ? ଅନ୍ୟ ବର୍ତ୍ତମାନ ତୀର୍ଥଙ୍କର ମାନଙ୍କ ପୂଜନ କାହିଁକି ନୁହେଁ ?

**ଦାଦାଶ୍ରୀ :** ସବୁ ତୀର୍ଥଙ୍କର ମାନଙ୍କର ହୋଇପାରିବ, କିନ୍ତୁ ସୀମନ୍ଧର ସ୍ୱାମୀଙ୍କର ଏହି ହିନ୍ଦୁସ୍ତାନ ସହିତ ହିସାବ ଅଛି, ଭାବ ଅଛି ତାଙ୍କର । କୋଡ଼ିଏ ତୀର୍ଥଙ୍କରଙ୍କ ମଧ୍ୟରୁ ବିଶେଷ ରୂପରେ ସୀମନ୍ଧର ସ୍ୱାମୀଙ୍କୁ ଭଜିବା ଉଚିତ, କାରଣ ଆମ ଭରତକ୍ଷେତ୍ରର ସବୁଠାରୁ ନିକଟରେ ସେ ହିଁ ଅଛନ୍ତି ଏବଂ ଭରତକ୍ଷେତ୍ର ସହିତ ତାଙ୍କର ଋଣାନୁବନ୍ଧ ଅଛି ।

ବର୍ତ୍ତମାନ କୋଡ଼ିଏ ତୀର୍ଥଙ୍କର ଅଛନ୍ତି, ସେମାନଙ୍କ ମଧ୍ୟରୁ କେବଳ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀଙ୍କର ହିଁ ଭରତକ୍ଷେତ୍ର ସହ ଋଣାନୁବନ୍ଧ, ହିସାବ ଅଛି । ତୀର୍ଥଙ୍କର ମାନଙ୍କର ମଧ୍ୟ ହିସାବ ଥାଏ ଆଉ ସୀମନ୍ଧର ସ୍ୱାମୀ ତ ଆଜି ସାକ୍ଷାତ ପ୍ରକଟ ଅଟନ୍ତି ।

ତାହେଲେ ଏବେ ତୁମେ ଅରିହନ୍ତ କାହାକୁ ମାନିବ ? ଏହି ସୀମନ୍ଧର ସ୍ୱାମୀଙ୍କୁ, ଆଉ ଯେଉଁ ଅନ୍ୟ ଉଣେଇଶ ତୀର୍ଥଙ୍କର ଅଛନ୍ତି, ସେମାନେ ସମସ୍ତେ ଅରିହନ୍ତ ହିଁ ଅଟନ୍ତି କିନ୍ତୁ ସେ ସମସ୍ତ ତୀର୍ଥଙ୍କରଙ୍କ ସହିତ ସମ୍ବନ୍ଧ ରଖିବାର ଆବଶ୍ୟକତା ନାହିଁ । ଜଣଙ୍କ ସହିତ ଯଦି ରଖିବା ତେବେ ସେଥିରେ ବାକି ସମସ୍ତେ ଆସିଯିବେ । ଅତଃ ସୀମନ୍ଧର ସ୍ୱାମୀଙ୍କ

ଦର୍ଶନ କରିବ । 'ହେ ଅରିହନ୍ତ ଭଗବାନ ! ଏବେ ଆପଣ ହିଁ ପ୍ରକୃତ ଅରିହନ୍ତ ଅଟନ୍ତି !' ଏପରି କହି ନମସ୍କାର କରିବ ।

## ସେଠାରେ ଅଛି, ମନ-ବଚନ-କାୟାର ଏକତା

ମହାବିଦେହ କ୍ଷେତ୍ରରେ ମଧ୍ୟ ମନୁଷ୍ୟ ଅଛନ୍ତି । ସେମାନେ ଆମ ପରି ଅଟନ୍ତି, ଦେହଧାରୀ । ସେଠାରେ ମନୁଷ୍ୟର ସମସ୍ତ ମନୋଭାବ ଆମ ପରି ହିଁ ଅଟେ ।

**ପ୍ରଶ୍ନକର୍ତ୍ତା :** ସେଠାରେ ଆୟୁଷ ଲମ୍ବା ହୋଇଥାଏ ନା ଦାଦାଜୀ ?

**ଦାଦାଶ୍ରୀ :** ହଁ, ଆୟୁଷ ଲମ୍ବା ହୋଇଥାଏ, ବହୁତ ଲମ୍ବା ହୋଇଥାଏ । ନହେଲେ, ଆମ ପରି ମନୁଷ୍ୟ ଅଟନ୍ତି, ଆମ ପରି ବ୍ୟବହାର । କିନ୍ତୁ ଆମର ଏଠି ଚତୁର୍ଥ *ଆରା* ରେ ଯେପରି ବ୍ୟବହାର ଥିଲା, ସେହିପରି ବ୍ୟବହାର । ଏହି ପଞ୍ଚମ *ଆରା* ର ଲୋକେ ଏବେ ତ ପକେଟ ମାରିବା ଶିଖିଗଲେ ଏବଂ ଭିତରେ ଭିତରେ ବନ୍ଧୁ-ବାନ୍ଧବଙ୍କ ମଧ୍ୟରେ ଓଲଟା କହିବା ଶିଖି ଗଲେଣି । ଏପରି ବ୍ୟବହାର ସେଠାରେ ନାହିଁ ।

**ପ୍ରଶ୍ନକର୍ତ୍ତା :** ସେଠାରେ ମଧ୍ୟ ସାରା ସଂସାର ଏହିପରି ଅଟେ କି ?

**ଦାଦାଶ୍ରୀ :** ହଁ, ଏହିପରି ସବୁ । ତାହା ମଧ୍ୟ କର୍ମ ଭୂମି ଅଟେ, ସେଠାରେ ମଧ୍ୟ 'ମୁଁ କରୁଛି' ଏପରି ମାନ୍ୟତା ରହିଥାଏ । ଅହଙ୍କାର, କ୍ରୋଧ-ମାନ-ମାୟା-ଲୋଭ ମଧ୍ୟ ଅଛି । ସେଠାରେ ଏହି ସମୟରେ ତୀର୍ଥଙ୍କର ଅଛନ୍ତି । ଚତୁର୍ଥ *ଆରା* ରେ ତୀର୍ଥଙ୍କର ଥାଆନ୍ତି । ଆଉ ଅନ୍ୟ ସବୁ କଥା ଆମ ପରି ହିଁ ଅଟେ ।

ଚତୁର୍ଥ ଏବଂ ପଞ୍ଚମ *ଆରା* ରେ କ'ଣ ଫରକ ? ତେବେ କହିବା ଚତୁର୍ଥ *ଆରା* ରେ ମନ-ବଚନ-କାୟାର ଏକତା ଥାଏ ଏବଂ ପଞ୍ଚମ *ଆରା* ରେ ଏହି ଏକତା ଭାଙ୍ଗିଯାଏ । ଅର୍ଥାତ ମନରେ ଯେପରି ଥାଏ, ବାଣୀରେ ସେହିପରି କୁହନ୍ତି ନାହିଁ ଏବଂ ବାଣୀରେ ଯେପରି ଥାଏ, ଆଚରଣରେ ସେପରି କରନ୍ତି ନାହିଁ, ତାହାର ନାମ ପଞ୍ଚମ *ଆରା* । ଆଉ ଚତୁର୍ଥ ଆରାରେ ତ ମନରେ ଯେପରି ଥିବ ବାଣୀରେ ସେହିପରି କୁହନ୍ତି ଏବଂ ସେହିପରି କରନ୍ତି । ସେଠାରେ ଚତୁର୍ଥ ଆରାରେ କେହି ବ୍ୟକ୍ତି ଯଦି କହେ ଯେ 'ମୋତେ ପୁରା ଗାଁ ଜଳାଇ ଦେବାର ବିଚାର ଆସୁଛି' ତେବେ ଆମେ ବୁଝିବା ଉଚିତ ଯେ ଏହା ରୂପକରେ ଆସିବାକୁ ଅଛି । ଆଉ ଏଠି ଆଜି କେହି କହେ ଯେ 'ମୁଁ ତୁମ ଘର ଜଳାଇ ଦେବି ।' ତେବେ ଆମେ ବୁଝିବା ଯେ, ଏବେ ତ ବିଚାରରେ ଅଛି, ତୁମେ ମୋତେ କେବେ ଭେଟିବ ?' ମୁହଁରେ କହିଥିବ ତଥାପି କିଛି ଠିକଣା ନାହିଁ । 'ମୁଁ ତୁମକୁ ମାରିଦେବି' କହେ କିନ୍ତୁ କିଛି ଆଧାର

ନାହିଁ, ମନ-ବଚନ-କାୟାର ଏକତା ନାହିଁ । ତେବେ ପୁଣି କହିବା ଅନୁସାରେ କାର୍ଯ୍ୟ କିପରି ହେବ ? କାର୍ଯ୍ୟ ହେବ ହିଁ ନାହିଁ ନା !

## କିପରି ଯାଇପାରିବା, ସେଠାକୁ ?

**ପ୍ରଶ୍ନକର୍ତ୍ତା :** ସେଠାକୁ ଯଦି ଯିବାର ଥିବ ତେବେ କେଉଁ ସ୍ଥିତିରେ ମନୁଷ୍ୟ ଯାଇ ପାରିବ ?

**ଦାଦାଶ୍ରୀ :** ଏଠାରେ ରହି ସେଠାକାର ପରି ହୋଇଯାଅ । ଯେବେ ଚତୁର୍ଥ *ଆରା*ର ଲୋକଙ୍କ ପରି ହୋଇଯିବ, ଏହି ପଞ୍ଚମ *ଆରା*ର ଦୁର୍ଗୁଣ ଚାଲିଯିବ, ତେବେ ସେଠାକୁ ଯାଇ ପାରିବ । କେହି ଗାଳି ଦିଏ, ତଥାପି ଯଦି ମନରେ ଖରାପ ଭାବ ନ ଆସେ, ତେବେ ସେଠାକୁ ଯାଇ ପାରିବ ।

**ପ୍ରଶ୍ନକର୍ତ୍ତା :** ସାମାନ୍ୟତଃ ଏଠାରୁ ସିଧା ମୋକ୍ଷକୁ ଯାଇ ହେବ ନାହିଁ । ପ୍ରଥମେ ମହାବିଦେହ କ୍ଷେତ୍ରକୁ ଯିବା ଏବଂ ପରେ ମୋକ୍ଷକୁ ଯିବା । ଏହା କିପରି ହୋଇଥାଏ ?

**ଦାଦାଶ୍ରୀ :** କ୍ଷେତ୍ରର ସ୍ୱଭାବ ଏପରି ଅଟେ ଯେ ମନୁଷ୍ୟ ଯେଉଁ *ଆରା* ର ଯୋଗ୍ୟ ହୋଇଯାଏ, ଅର୍ଥାତ୍ ଏଠାରେ ଯିଏ ଚତୁର୍ଥ *ଆରା* ପରି ହୋଇଯାଏ, ଏଠାରେ ଏହି ଜ୍ଞାନ ମିଳି ନଥିଲେ ମଧ୍ୟ ଅନ୍ୟ ଲୋକ ଯଦି ଏପରି ହୋଇଯାନ୍ତି, ତେବେ ସେମାନେ ସେଠାକୁ ଟାଣି ହୋଇଯିବେ ଏବଂ ସେଠି ଯେଉଁମାନେ ପଞ୍ଚମ *ଆରା* ପରି ହୋଇଯାନ୍ତି, ସେମାନେ ଏଠି ପଞ୍ଚମ ଆରାକୁ ଆସିଯାନ୍ତି, ଏପରି ଏହି କ୍ଷେତ୍ରର ସ୍ୱଭାବ ଅଟେ । କାହାକୁ ନେବା-ଆଣିବାକୁ ପଡ଼େ ନାହିଁ । କ୍ଷେତ୍ର ସ୍ୱଭାବରୁ ଏ ସବୁ ଲୋକେ ତୀର୍ଥଙ୍କରଙ୍କ ପାଖରେ ପହଞ୍ଚିବେ । ଅତଃ ଯେଉଁମାନେ ସୀମନ୍ଧର ସ୍ୱାମୀଙ୍କୁ ଭୁଲନ୍ତି ନାହିଁ, ତାଙ୍କୁ ଭଜୁଥାନ୍ତି ସେମାନେ ପରେ ସେଠି ତାଙ୍କ ଦର୍ଶନ କରିବେ ଆଉ ତାଙ୍କ ପାଖରେ ବସିବେ ଏବଂ ମୋକ୍ଷକୁ ଚାଲିଯିବେ ।

ଯାହାଙ୍କୁ ମୁଁ ଜ୍ଞାନ ଦିଏ, ସେମାନେ ଏକ-ଦୁଇ ଅବତାରୀ ହେବେ । ପୁଣି ସେମାନଙ୍କୁ ସେଠି ସୀମନ୍ଧର ସ୍ୱାମୀଙ୍କ ପାଖକୁ ହିଁ ଯିବାକୁ ହେବ । ତାଙ୍କ ଦର୍ଶନ କରିବାକୁ ହେବ, ତୀର୍ଥଙ୍କରଙ୍କ ଦର୍ଶନ କରିବା କେବଳ ବାକି ରହିଲା । ବାସ୍, ଦର୍ଶନ ହେବା ମାତ୍ରେ ମୋକ୍ଷ । ଅନ୍ୟ ସବୁ ଦର୍ଶନ ହୋଇଗଲା । ଏହି ଅନ୍ତିମ ଦର୍ଶନ କରିବା, ଯାହା ଏହି ଦାଦାଜୀଙ୍କ ଦର୍ଶନ ଠାରୁ ଉପରର ଦର୍ଶନ ଅଟେ । ସେହି ଦର୍ଶନ ହେଲା ମାନେ ତୁରନ୍ତ ମୋକ୍ଷ !

**ପ୍ରଶ୍ନକର୍ତ୍ତା :** ଯେତେ ଲୋକ ସୀମନ୍ଧର ସ୍ୱାମୀଙ୍କ ଦର୍ଶନ କରୁଛନ୍ତି, ସେମାନେ ସମସ୍ତେ ପରେ ମୋକ୍ଷରେ ଯିବେ ?

**ଦାଦାଶ୍ରୀ :** ସେହି ଦର୍ଶନ କରିବା ଦ୍ୱାରା ମୋକ୍ଷରେ ଯିବେ, ଏପରି କିଛି ହୋଇ ନଥାଏ । ତାଙ୍କ କୃପା ପ୍ରାପ୍ତ ହେବା ଦରକାର । ହୃଦୟ ଶୁଦ୍ଧ ହେବା ଦରକାର, ସେଠାରେ ହୃଦୟ ଶୁଦ୍ଧ ହୋଇଗଲେ, ପରେ ତାଙ୍କ କୃପା ବରଷିବାକୁ ଲାଗେ । ଏହା ତ ଶୁଣିବାକୁ ଆସିଲେ ଏବଂ କାନକୁ ବହୁତ ମଧୁର ଲାଗିଲା କିନ୍ତୁ ଶୁଣିବା ପରେ ପୁଣି ଯେଉଁଠି ଥିଲେ, ସେଇଠିକୁ ସେଇଠି । ଏମାନଙ୍କୁ ତ କେବଳ ଚଟଣୀ ହିଁ ପସନ୍ଦ, ଭରପୁର ଥାଳି ସାମ୍ନାରେ ଥାଇ ମଧ୍ୟ କେବଳ ଚଟଣୀ ପାଇଁ ଥାଳି ଧରି ବସି ରହିଲେ ମୋକ୍ଷ ହୁଏ ନାହିଁ ।

## ସେମାନଙ୍କ ପାଇଁ ତ ସାମ୍ନାରୁ ଚାଲି ଆସିବ ମହାବିଦେହ କ୍ଷେତ୍ର

ଯାହାକୁ ଏଠି ଶୁଦ୍ଧାତ୍ମାର *ଲକ୍ଷ୍ୟ* (ଜାଗୃତି) ହୋଇଯାଇଥାଏ, ସେ ଏଠି ଭରତ କ୍ଷେତ୍ରରେ ରହି ପାରିବ ହିଁ ନାହିଁ । ଯାହାକୁ ଆତ୍ମାର *ଲକ୍ଷ୍ୟ* ହୋଇଯାଏ, ସେ ମହାବିଦେହ କ୍ଷେତ୍ରରେ ପହଞ୍ଚି ହିଁ ଯାଏ, ନିୟମ ଏପରି ଅଟେ ! ଏଠି ଏହି ଦୁଷମକାଳରେ ରହିପାରିବ ହିଁ ନାହିଁ । ଯାହାକୁ ଶୁଦ୍ଧାତ୍ମାର ଲକ୍ଷ୍ୟ ବସିଲା, ସେ ମହାବିଦେହ କ୍ଷେତ୍ରରେ ଏକ ଜନ୍ମ ଅଥବା ଦୁଇ ଜନ୍ମ ନେଇ ତୀର୍ଥଙ୍କରଙ୍କ ଦର୍ଶନ କରି ମୋକ୍ଷରେ ଚାଲିଯାଏ,ଏହା ଏପରି ସହଜ ଏବଂ ସରଳ ମାର୍ଗ ଅଟେ !

## ତାଙ୍କର ସନ୍ଧାନ 'ଦାଦା ଭଗବାନ'ଙ୍କ ଦ୍ୱାରା

ସୀମନ୍ଧର ସ୍ୱାମୀ ଭଗବାନଙ୍କୁ 'ଫୋନ' କରିବାର ଥିବ ତେବେ ଫୋନର ମାଧ୍ୟମ ଥିବା ଦରକାର, ତେବେ ଯାଇ ଫୋନ ପହଞ୍ଚିବ । ସେହି ମାଧ୍ୟମ ହେଉଛନ୍ତି ଏହି 'ଦାଦା ଭଗବାନ' । ଧରାଯାଉ, ମହାବୀର ଭଗବାନ ଯଦି ଆଜି ଏବେ ଏଠି ଦିଲ୍ଲୀରେ ଥିବେ ଏବଂ ଏଠାରୁ ନାମ ନେବା ତେବେ ତାଙ୍କ ପାଖରେ ପହଞ୍ଚିଯାଏ । ସେହିପରି ଏହା ମଧ୍ୟ ପହଞ୍ଚିଯାଏ ! ଏହି ଫୋନ ଟିକିଏ ଅଧା ମିନିଟ ବିଳମ୍ବରେ ପହଞ୍ଚେ, କିନ୍ତୁ ପହଞ୍ଚିଯାଏ ।

ସେ ନିଜେ ହାଜର ଅଛନ୍ତି, କିନ୍ତୁ ଆମ ଦୁନିଆରେ ନାହାନ୍ତି, ଅନ୍ୟ ଦୁନିଆରେ ଅଛନ୍ତି । ତାଙ୍କ ସହିତ ମୋର ଯୋଗାଯୋଗ ଆଦି ଚାଲି ରହିଥାଏ । ଏହି ପୁରା ଜଗତର କଲ୍ୟାଣ ହେବା ହିଁ ଉଚିତ । ମୁଁ ତ ନିମିତ୍ତ ଅଟେ । ସେଥିପାଇଁ 'ଦାଦା ଭଗବାନଙ୍କ' ଥ୍ରୁ(Through) ଦର୍ଶନ କରାଉଛି ଏବଂ ତାହା ସେପର୍ଯ୍ୟନ୍ତ ପହଞ୍ଚିଯାଏ । ସେଥିପାଇଁ ମୁଁ ଗୋଟିଏ ଜନ୍ମ କହିଛି ନା ! ଏଠାରୁ ପରେ ସେଇଠିକୁ ଯିବାର ଅଛି ଏବଂ ତାଙ୍କ ନିକଟରେ ବସିବାର ଅଛି । ପରେ ମୁକ୍ତି ହେବ । ସେଥିପାଇଁ ଆଜିଠୁ ହିଁ ପରିଚୟ କରାଇ ଦେଉଛି ଏବଂ 'ଦାଦା ଭଗବାନଙ୍କ' ଥ୍ରୁ ନମସ୍କାର କରାଉଛି ।

ସୀମନ୍ଧର ସ୍ୱାମୀଙ୍କ ସହିତ ମୋର ଏତେ ଭଲ ପରିଚୟ ଅଛି ଯେ ମୋ କହିବା ଅନୁସାରେ ଯଦି ତୁମେ ଦର୍ଶନ କରିବ ତେବେ ତାଙ୍କ ପର୍ଯ୍ୟନ୍ତ ପହଞ୍ଚିପାରିବ ।

## ....ତାହା 'ଦାଦା ଭଗବାନଙ୍କ' ଥ୍ରୁ ନିଶ୍ଚିତ ପହଞ୍ଚିବ

**ପ୍ରଶ୍ନକର୍ତ୍ତା :** ଆମେ ଭକ୍ତି କରିବୁ ତେବେ ସୀମନ୍ଧର ସ୍ୱାମୀଙ୍କ ପର୍ଯ୍ୟନ୍ତ କିପରି ପହଞ୍ଚିବ ? କାହିଁକିନା ସେ ତ ମହାବିଦେହ କ୍ଷେତ୍ରରେ ଅଛନ୍ତି ଆଉ ଆମେ ଏଠି ।

**ଦାଦାଶ୍ରୀ :** ଯଦି କଲିକତାରେ ଥିବେ ତେବେ ପହଞ୍ଚିବ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ତାହା ପହଞ୍ଚିବ, କିନ୍ତୁ ଏହା ତ ବହୁତ ଦୂର ଅଟେ ।

**ଦାଦାଶ୍ରୀ :** ଏହା କଲିକତା ପରି ହିଁ ଅଟେ । ଆଖିରେ ଦେଖାଯାଏ ନାହିଁ, ସେ ସବୁ କଲିକତା ହିଁ କୁହାଯିବ । ସେ କଲିକତାରେ ଥାଆନ୍ତୁ କିମ୍ବା ବଡ଼ୋଦରାରେ ଥାଆନ୍ତୁ, ସେ ଏବେ ଆଖିରେ ଦେଖାଯାଉ ନାହାନ୍ତି ନା !

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଆମେ ଯେଉଁ ଭକ୍ତି କରୁ, ଭାବ କରୁ ସେସବୁ ତାଙ୍କୁ ସେଠି....

**ଦାଦାଶ୍ରୀ :** ତୁରନ୍ତ ହିଁ ପହଞ୍ଚି ଯାଏ । ଗୋଟିଏ ପ୍ରତ୍ୟକ୍ଷ ଏବଂ ଆଉ ଗୋଟିଏ ପରୋକ୍ଷ । ପରୋକ୍ଷ ତ ବହୁତ ଦୂର ହୋଇଥାଏ ଆଉ ପ୍ରତ୍ୟକ୍ଷ ସାମ୍ନାରେ ହୋଇଥାଏ ଯାହା ଆଖିରେ ଦେଖି ପାରିବା, ଇନ୍ଦ୍ରିୟ ଦ୍ୱାରା ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ସେ ପରୋକ୍ଷରେ ଲାଭ କେତେ ? ପରୋକ୍ଷ ଏବଂ ପ୍ରତ୍ୟକ୍ଷ ଲାଭରେ ଅନ୍ତର କେତେ ?

**ଦାଦାଶ୍ରୀ :** ପରୋକ୍ଷ ତ ଯଦି ତିନି ମାଇଲ ଦୂରରେ ଥାଅନ୍ତୁ ଅବା ଲକ୍ଷେ ମାଇଲ ଦୂରରେ ଥାଆନ୍ତୁ ତେବେ ମଧ୍ୟ ସମାନ କଥା ! ଅର୍ଥାତ ଦୂରରେ ଯଦି ଥିବେ ତେବେ ସେଥିରେ କିଛି ଅସୁବିଧା ନାହିଁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ସେ ପ୍ରତ୍ୟକ୍ଷ ତୀର୍ଥଙ୍କର ଅଟନ୍ତି ନା ?

**ଦାଦାଶ୍ରୀ :** ମୂଳତଃ ପ୍ରତ୍ୟକ୍ଷଙ୍କ ବିନା କିଛି କାମ ହେବ ହିଁ ନାହିଁ ନା !

ଏଥିପାଇଁ ତ ଏବେ ତୁମକୁ ତାଙ୍କର ପରିଚୟ କରାଉଅଛି । ତୁମକୁ ମୁଁ ଏ ଯେଉଁ ପ୍ରତିଦିନ ପ୍ରାର୍ଥନା କରାଉଛି, ଅର୍ଥାତ ତୁମକୁ ସେଠାକୁ ଯିବାକୁ ପଡ଼ିବ । ତାଙ୍କ ଦର୍ଶନ ଯେଉଁଦିନ କରିବ, ସେହି ଦିନ ମୁକ୍ତି ! ତାହା ଅନ୍ତିମ ଦର୍ଶନ !

**ପ୍ରଶ୍ନକର୍ତ୍ତା :** ମହାବିଦେହ କ୍ଷେତ୍ରରେ ?

**ଦାଦାଶ୍ରୀ :** ହଁ, ମୁଁ ତ ଖଟ୍‌ପଟିଆ (କଲ୍ୟାଣ ହେତୁ ଖଟ୍‌ପଟ୍ କରିବାବାଲା) ଅଟେ ।

ମୋ ପାଖରେ ଏକ ଅବତାରୀ ପଦ ପ୍ରାପ୍ତ ହୁଏ । ଏକ ଅବତାରୀ ହୋଇଯାଏ । ମୋ ପାଖରେ ପୂର୍ଣ୍ଣତା ହୋଇପାରେ ନାହିଁ । ସେଥିପାଇଁ ସୀମନ୍ଧର ସ୍ୱାମୀଙ୍କ ନାମ ବୋଲାଉଛି ନା ! ପ୍ରତିଦିନ ସୀମନ୍ଧର ସ୍ୱାମୀଙ୍କ ଦର୍ଶନ, ସେଠାକାର ପଞ୍ଚ ପରମେଷ୍ଠୀଙ୍କ, ଅନ୍ୟ ଉଣେଇଶି ତୀର୍ଥଙ୍କରଙ୍କ, ଏ ସବୁ ମୁଁ ଯେଉଁ ବିଧି କରାଉଛି, ତାହା କେବଳ ଗୋଟିଏ ହେତୁରେ ଯେ ଏବେ ତୁମର ଆରାଧକ ପଦ ସେଠାରେ ଅଛି ।

ଏବେ ଏଠି, ଆରାଧକ ପଦ ରହିଲା ନାହିଁ, ଏହି କ୍ଷେତ୍ରରେ ! ସେଥିପାଇଁ ମୁଁ ସେଠାରେ ଦାଦା ଭଗବାନଙ୍କ ସାକ୍ଷୀରେ ପରିଚୟ କରାଉଛି । ମୁଁ ଜଣେ ବ୍ୟକ୍ତିକୁ କହିଲି, ଭାଇ, ତୁମେ ଏପରି ଧରିନିଅ ଯେ ତୁମେ ମହାବିଦେହ କ୍ଷେତ୍ରରେ ଅଛ, ଏହା ହେଉଛି ମହାବିଦେହ କ୍ଷେତ୍ର, ଏପରି କଳ୍ପନାରେ ମାନିନିଅ ଏବଂ ସୀମନ୍ଧର ସ୍ୱାମୀ ସେଠି କଲିକତାରେ ଅଛନ୍ତି, ତେବେ ଏଠାରୁ ତୁମେ କେତେ ଥର କଲିକତା ଯିବ ଦର୍ଶନ ପାଇଁ ? କେତେ ଥର ଯିବ ?

**ପ୍ରଶ୍ନକର୍ତ୍ତା :** ଥରେ ଅଥବା ବେଶୀରୁ ବେଶୀ ଦୁଇଥର ।

**ଦାଦାଶ୍ରୀ :** ହଁ, ବେଶୀରୁ ବେଶୀ ଦୁଇଥର । ତେବେ ମହାବିଦେହ କ୍ଷେତ୍ରରେ ଯଦି ଏପରି ଲାଭ ମିଳୁଥିବ, ତେବେ ଆମର ଏହି କ୍ଷେତ୍ରରେ ମୋ ପାଖରେ ଏପରି ଚାବି ଅଛି ଯେ ପ୍ରତିଦିନ ମୁଁ ଲାଭ କରାଇ ଦିଏ । ମୋ ପାଖରେ ଏପରି ଚାବି ଅଛି ଯେ ପ୍ରତିଦିନ ଲାଭ । ସୀମନ୍ଧର ସ୍ୱାମୀ ତୀର୍ଥଙ୍କର ମଧ୍ୟ ନୋଟ୍(Note) କରନ୍ତି ଯେ ଏପରି ଭକ୍ତ କେହି ହୋଇନାହାନ୍ତି ଯିଏ ପ୍ରତିଦିନ ଦର୍ଶନ କରୁଥିବେ ! ରହୁଛନ୍ତି ପରଦେଶରେ ଏବଂ ପ୍ରତିଦିନ ଦର୍ଶନ କରିବାକୁ ଆସୁଛନ୍ତି ! ଆମକୁ ନା ତ ଗାଡ଼ି ଦରକାର ନା ଘୋଡ଼ା ! ଦାଦା ଭଗବାନଙ୍କ ଥ୍ରୁ କହିଲ ମାନେ ପହଞ୍ଚି ଗଲା ।

## ବିନା ମାଧ୍ୟମରେ ପହଞ୍ଚେ ନାହିଁ

**ପ୍ରଶ୍ନକର୍ତ୍ତା :** ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କରୁଛି, ତାହା ସୀମନ୍ଧର ସ୍ୱାମୀଙ୍କୁ ପହଞ୍ଚିଥାଏ, ସେ ଦେଖିପାରନ୍ତି, ଏହା ବାସ୍ତବିକତା ଅଟେ ନା ?

**ଦାଦାଶ୍ରୀ :** ସେ ସାମାନ୍ୟ ଭାବରେ ଦେଖନ୍ତି । ତୀର୍ଥଙ୍କର, ବିଶେଷ ଭାବରେ ଦେଖନ୍ତି ନାହିଁ । ଏହା ଦାଦା ଭଗବାନଙ୍କ ମାଧ୍ୟମରେ କହିଛ, ସେଥିପାଇଁ ସେଠାରେ ପହଞ୍ଚେ । ଅର୍ଥାତ ବିନା ମାଧ୍ୟମରେ ପହଞ୍ଚି ପାରିବ ନାହିଁ !

## ଅଲଗା, ମୁଁ ଏବଂ 'ଦାଦା ଭଗବାନ'

ପୁସ୍ତକରେ ଯେମିତି ଲେଖାହୋଇଛି କି ଇଏ ଯେଉଁ ଦେଖାଯାଉଛନ୍ତି, ସେ 'ଏ. ଏମ. ପଟେଲ' ଅଟନ୍ତି, ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ 'ଦାଦା ଭଗବାନ' ପ୍ରକଟ ହୋଇଛନ୍ତି ଏବଂ ସେ ଚଉଦ ଲୋକର ନାଥ ଅଟନ୍ତି । ଯାହା କେବେ ଶୁଣିବାକୁ ମିଳିନଥିଲା, ଏପରି ଏଠାରେ ପ୍ରକଟ ହୋଇଛନ୍ତି । ସେଥିପାଇଁ 'ମୁଁ ନିଜେ ହିଁ ଭଗବାନ', ଏପରି ମୁଁ କେବେ ବି କହେ ନାହିଁ । ତାହା ତ ପାଗଳାମି ଅଟେ, ମ୍ୟାଡ଼ନେସ୍ ଅଟେ । ଜଗତର ଲୋକ କୁହନ୍ତୁ, କିନ୍ତୁ ମୁଁ ଏପରି କହେ ନାହିଁ ଯେ ମୁଁ ଏପରି ଅଟେ । ମୁଁ ତ ସଫା-ସଫା କହେ ଏବଂ 'ମୁଁ ଭଗବାନ ଅଟେ' ଏପରି କହେ ନାହିଁ । 'ମୁଁ ତ ଜ୍ଞାନୀପୁରୁଷ ଅଟେ' ଏବଂ ତିନିଶହ ଛପନ ଡିଗ୍ରୀ ରେ ଅଛି । ଅର୍ଥାତ ଚାରି ଡିଗ୍ରୀର ଫରକ । ଦାଦା ଭଗବାନଙ୍କ କଥା ଅଲଗା ଅଟେ ଏବଂ ବ୍ୟବହାରରେ ମୁଁ ନିଜକୁ 'ଏ. ଏମ. ପଟେଲ' କହେ ।

ଏବେ ଏହି ଫରକ ବିଷୟରେ ଲୋକଙ୍କୁ ବେଶୀ ବୁଝା ପଡ଼େ ନାହିଁ, ଅର୍ଥାତ ଦାଦା ଭଗବାନ ମୋ ଭିତରେ ପ୍ରକଟ ହୋଇଛନ୍ତି । ଯାହା ଦରକାର ସେହି କାମ କାଢ଼ି ନିଅ । ଏପରି ସଫା-ସଫା କହୁଛି । କେବେ କେମିତି ଏପରି ଚଉଦ ଲୋକର ନାଥ ପ୍ରକଟ ହୁଅନ୍ତି । ମୁଁ ନିଜେ ଦେଖିକି କହୁଛି, ଏଣୁ କାମ କାଢ଼ି ନିଅ ।

## ସେ ଦର୍ଶନ, ତୁରନ୍ତ ପହଞ୍ଚେ

ସବୁ ଲୋକ ସକାଳେ ନିଦରୁ ଉଠନ୍ତି ତେବେ ଭିଡ଼ ହୋଇଯାଏ ନା? ଏବଂ ସନ୍ଧ୍ୟାରେ ତ ନିରୋଳା ଭିଡ଼ ହିଁ ହୁଏ । ସେଥିପାଇଁ ସକାଳ ସାଢ଼େ ଚାରି ରୁ ସାଢ଼େ ଛଅ, ତାହା ବ୍ରହ୍ମମୁହୂର୍ତ କୁହାଯାଏ । ସବୁଠାରୁ ଉତ୍ତମ ମୁହୂର୍ତ୍ତ । ଏହି ସମୟରେ ଯିଏ ଜ୍ଞାନୀପୁରୁଷଙ୍କୁ ସ୍ମରଣ କଲା, ତୀର୍ଥଙ୍କରଙ୍କୁ ସ୍ମରଣ କଲା, ଶାସନ ଦେବୀ-ଦେବତାଙ୍କୁ ସ୍ମରଣ କଲା, ତେବେ ତାହା ସବୁ ପ୍ରଥମେ ସ୍ୱୀକାର ହୋଇଯାଏ, ସମସ୍ତଙ୍କୁ! କାରଣ ପରେ ଲୋକ ବଢ଼ିଯାନ୍ତି ନା! ଜଣେ ଆସିଲା, ପୁଣି ଆଉ ଜଣେ ଆସିଲା । ପୁଣି ଭିଡ଼ ହେବାକୁ ଲାଗେ । ସାତଟାରୁ ଭିଡ଼ ହେବାକୁ ଲାଗେ । ପରେ ବାରଟା ବେଳକୁ ଜବରଦସ୍ତ ଭିଡ଼ ହୋଇଯାଏ । ଅତଃ ଯିଏ ସର୍ବ ପ୍ରଥମେ ଯାଇ ଛିଡ଼ା ହୋଇ ରହିବ, ତା'କୁ ଭଗବାନଙ୍କ 'ଫ୍ରେଶ୍' ଦର୍ଶନ ହେବ । 'ଦାଦା ଭଗବାନଙ୍କ ସାକ୍ଷୀରେ ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କରୁଛି' କହିବା ମାତ୍ରେ ତୁରନ୍ତ ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର ପହଞ୍ଚି ଯାଏ । ସେହି ସମୟରେ ସେଠି କୌଣସି ଭିଡ଼ ନ ଥାଏ । ପରେ ଭିଡ଼ରେ ଭଗବାନ ବି କ'ଣ କରିବେ? ଏଣୁ ସାଢ଼େ ଚାରି ରୁ

ସାଢ଼େ ଛଅ ତ ଅପୂର୍ବ କାଳ କୁହାଯାଏ ! ଯୁବକମାନେ ତ ଏ ମଉକା ଛାଡ଼ିବା କଥା ହିଁ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଆପଣ ଆମକୁ ସକାଳେ ସୀମନ୍ଧର ସ୍ୱାମୀଙ୍କୁ ଚାଳିଶ ଥର ନମସ୍କାର କରିବାକୁ କହିଛନ୍ତି, ତେବେ ସେତେବେଳେ ଏଠାରେ ସକାଳ ହୋଇଥିବ ଏବଂ ସେଠାକାର ସମୟରେ ଡିଫରେନ୍ସ ଥିବ ନା ?

**ଦାଦାଶ୍ରୀ :** ଆମକୁ ତାହା ଦେଖିବାର ନାହିଁ । ସକାଳେ କହିବାର ଭାବାର୍ଥ ଏପରି ଯେ ଅନ୍ୟ କାମ-ଧନ୍ଦାରେ ଯିବା ପୂର୍ବରୁ । ଯଦି, କାମ ନଥିବ ତେବେ କୌଣସି ବି ସମୟ, ଦଶଟାରେ କର, ବାରଟାରେ କର !

## ସେଠାକୁ ଯାଇହେବ, କିନ୍ତୁ ସଦେହ ନୁହେଁ

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀ ସେଠାରେ ଅଛନ୍ତି । ଆପଣ ତ ପ୍ରତିଦିନ ଦର୍ଶନ କରିବାକୁ ଯାଉଛନ୍ତି ତେବେ ତାହା କିପରି ? ତାହା ଆମକୁ ବୁଝାନ୍ତୁ ।

**ଦାଦାଶ୍ରୀ :** ମୁ ଯାଏ କିନ୍ତୁ ମୁଁ ପ୍ରତିଦିନ ଦର୍ଶନ କରିବା ପାଇଁ ଯାଇ ପାରିବି ନାହିଁ । ମୋର, ଜ୍ଞାନୀପୁରୁଷଙ୍କର ଏଠାରୁ(କାନ୍ଧରୁ) ଏକ ଲାଇଟବାଲା ପ୍ରକାଶ ବାହାରେ ଏବଂ ଯେଉଁଠି ତୀର୍ଥଙ୍କର ଅଛନ୍ତି, ସେଠାକୁ ଯାଇ ପ୍ରଶ୍ନର ସମାଧାନ ନେଇ ପୁଣି ଫେରିଆସେ । ଯେତେବେଳେ ଦୃଷ୍ଟିରେ ଫରକ ପଡ଼ିଯାଏ, ବୁଝିବାରେ କିଛି ଭୁଲ ହୁଏ, ସେତେବେଳେ ପଚାରି ଆସେ । କିନ୍ତୁ ମୁଁ ସଦେହ (ଦେହ ସହ) ଯାଇ ଆସି ପାରିବି ନାହିଁ କାରଣ ମହାବିଦେହ କ୍ଷେତ୍ର ଏପରି ନୁହେଁ !

ମୋର ସୀମନ୍ଧର ସ୍ୱାମୀଙ୍କ ସହିତ ତାର ଯୋଡ଼ି ହୋଇ ଅଛି । ମୁଁ ସବୁ ପ୍ରଶ୍ନ ସେଠି ପଚାରେ ଏବଂ ସେସବୁର ଉତ୍ତର ମିଳିଯାଏ । ଆଜି ପର୍ଯ୍ୟନ୍ତ ମୋତେ ଲକ୍ଷେ ପ୍ରଶ୍ନ ପଚରା ଯାଇଥିବ ଏବଂ ସେସବୁର ଉତ୍ତର ମୁଁ ଦେଇଥିବି, କିନ୍ତୁ ସେସବୁ ସ୍ୱତନ୍ତ୍ର ରୂପେ ନୁହେଁ, ସବୁର ଜବାବ ମୋତେ ସେଠାରୁ ଆସିଥିଲା । ସବୁ ଉତ୍ତର ଦିଆଯାଇ ପାରିବ ନାହିଁ ନା ! ଜବାବ ଦେବା କ'ଣ କିଛି ସହଜ କଥା ? କୌଣସି ବି ବ୍ୟକ୍ତି, ପାଞ୍ଚଟି ଜବାବ ବି ଦେଇପାରିବ ନାହିଁ ! ଜବାବ ଦେବା, ସେତିକି ଭିତରେ ତ ବାଦବିବାଦ ଆରମ୍ଭ ହୋଇଯାଏ । କିନ୍ତୁ ଏଠି ତ ଏକଜାକ୍ଟ ଜବାବ ଆସେ । ସେଥିପାଇଁ ସୀମନ୍ଧର ସ୍ୱାମୀଙ୍କ ଭଜନ କରୁ !

## ଏହି କାଳରେ ଭାବୀ ତୀର୍ଥଙ୍କର କେହି ହୋଇ ପାରିବେ ନାହିଁ

**ପ୍ରଶ୍ନକର୍ତ୍ତା :** ଦାଦା, ଏ ସବୁ ଲୋକ ଯେଉଁ ଅଛନ୍ତି, ଦାଦାଜୀଙ୍କ ଜ୍ଞାନ ପ୍ରାପ୍ତ ମହାତ୍ମା

ଅଛନ୍ତି, ସେମାନଙ୍କ ମଧ୍ୟରୁ କେତେ ଜଣ ଲୋକ ତୀର୍ଥଙ୍କର ହେବେ ? ଏ ଯେଉଁ ଦାଦାଜୀଙ୍କ ଜ୍ଞାନ ନେଇଥିବା ମହାତ୍ମା ଅଛନ୍ତି, ଯାହା କି ପଚାଶ ହଜାର ହେବେ, ଯେତେ ବି ମହାତ୍ମା ଅଛନ୍ତି, କିଛି ଲୋକ ସାନିଧ୍ୟରେ ଥିବେ, କିଛି ଲୋକ ଦୂରରେ ଥିବେ, ସେମାନଙ୍କ ମଧ୍ୟରୁ କେତେ ଜଣ ତୀର୍ଥଙ୍କର ହେବେ ?

**ଦାଦାଶ୍ରୀ :** ତୀର୍ଥଙ୍କର, ଏଥିରେ ତୀର୍ଥଙ୍କର କଥା ଜଣା ନାହିଁ । ଏଥିରେ ତୀର୍ଥଙ୍କର ନୁହେଁ, ସବୁ କେବଳୀ ହେବେ । କେବଳଜ୍ଞାନୀ ହୋଇ ମୋକ୍ଷରେ ଯିବେ ସବୁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ତୀର୍ଥଙ୍କର କାହିଁକି ହୋଇ ପାରିବେ ନାହିଁ ?

**ଦାଦାଶ୍ରୀ :** ତୀର୍ଥଙ୍କର ନୁହେଁ, ସେ ଗୋତ୍ର ବହୁତ ଉଚ୍ଚ ଗୋତ୍ର ହୋଇଥାଏ । ସେହି ଗୋତ୍ର କେବେ ବାନ୍ଧି ହୁଏ କି ଯେବେ ଚତୁର୍ଥ *ଆରା* ରେ ଅଥବା ତୃତୀୟ *ଆରା* ରେ ତୀର୍ଥଙ୍କର ହାଜର ଥିବେ, ସେତେବେଳେ ଯଦି ବାନ୍ଧିଥିବ, ତେବେ ଚଳିବ । ଏବେ ଗୋତ୍ର ବାନ୍ଧିବ ତେବେ ଚଳିବ ନାହିଁ । ଅର୍ଥାତ ଏବେ ନୂଆ ଗୋତ୍ର ବନ୍ଧା ହୋଇପାରିବ ନାହିଁ । ପୁରୁଣା ଯଦି ବନ୍ଧା ହୋଇଥିବ ତେବେ ମୋତେ ଜଣା ପଡ଼ିଯାଏ । ତୀର୍ଥଙ୍କର ହେବାରେ କିଛି ବିଶେଷ ଫାଇଦା ନାହିଁ । ଆମକୁ ତ ମୋକ୍ଷକୁ ଯିବାରେ ଫାଇଦା । ତୀର୍ଥଙ୍କରଙ୍କୁ ମଧ୍ୟ ମୋକ୍ଷକୁ ଯିବାର ଅଛି ନା !

**ପ୍ରଶ୍ନକର୍ତ୍ତା :** କେତେ ବର୍ଷରେ ଗୋତ୍ର ବଦଳେ, ନିଜର ? ଗୋତ୍ର କିପରି ବଦଳେ ?

**ଦାଦାଶ୍ରୀ :** ତାହା ତ ଯଦି ଭଲ କାଳ ହୋଇଥିବ ଏବଂ ତୀର୍ଥଙ୍କର ସ୍ୱୟଂ ହାଜର ଥିବେ, ତେବେ ତୀର୍ଥଙ୍କର ଗୋତ୍ର ବାନ୍ଧି ହୁଏ ।

**ପ୍ରଶ୍ନକର୍ତ୍ତା :** ଦାଦାଜୀ, କିନ୍ତୁ ଏବେ କଳିଯୁଗ ପରେ ସତ୍ୟଯୁଗ ହିଁ ଆସିବାକୁ ଅଛି ନା ? ଅର୍ଥାତ ଭଲ କାଳ ଆସିବ ନା ?

**ଦାଦାଶ୍ରୀ :** ନା, କିନ୍ତୁ ଯେବେ ତୀର୍ଥଙ୍କର ଥିବେ ତେବେ ନା ! ତାଙ୍କ ଆସିବା ପୂର୍ବରୁ, ଏମାନଙ୍କ ମଧ୍ୟରୁ ଅଧିକାଂଶ ମୋକ୍ଷରେ ଚାଲିଯିବେ !

**ପ୍ରଶ୍ନକର୍ତ୍ତା :** ମୋତେ ବାରମ୍ବାର ଏପରି ଲାଗୁଛି ଯେ ମୁଁ ତୀର୍ଥଙ୍କର କାହିଁକି ହୋଇପାରିବି ନାହିଁ? ନା ପୁଣି ସିଧା ମୋକ୍ଷରେ ହିଁ ଯିବି ? ପୁଣି ଆପଣଙ୍କଠାରୁ ଏହା ଜାଣିବାକୁ ମିଳିଲା ଯେ ତୀର୍ଥଙ୍କର ଗୋତ୍ର ଯଦି ବାନ୍ଧିଥିବ ତେବେଯାଇ ତୀର୍ଥଙ୍କର ହୋଇପାରିବା । ତାହେଲେ ଏବେ ମୁଁ କିପରି ଗୋତ୍ର ବାନ୍ଧିପାରିବି ?

**ଦାଦାଶ୍ରୀ :** ଏବେ ବି ତୋତେ ଲକ୍ଷେ ବର୍ଷ ଅବତାର କରିବାର ଥିବ ତେବେ ବନ୍ଧା ହୋଇପାରିବ । ତେବେ ଯଦି ବନ୍ଧାଇ ଦେବି ପୁଣି ସପ୍ତମ ନର୍କରେ ଅନେକ ଥର

ଯିବାକୁ ପଡ଼ିବ । କେତେ ଥର ନର୍କକୁ ଯିବା ପରେ ତେବେଯାଇ ଏପରି ଭଲ ପଦ ମିଳେ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏପରି ଭଲ ପଦ ଯଦି ପ୍ରାପ୍ତ କରିବାର ଥିବ ତେବେ ନର୍କ ଯିବାରେ କ'ଣ ଅସୁବିଧା ?

**ଦାଦାଶ୍ରୀ :** ଆଉ, ତୋ ହୋସିୟାରୀ ରଖ, ଚୁପଚାପ ! । ବୁଝି ଯା । ଯେତେବେଳେ ସାମାନ୍ୟ ତପ କରିବାକୁ ପଡ଼ିବ, ସେତେବେଳେ ଜଣା ପଡ଼ିଯିବ ! ଆଉ ସେଠି ତ ବହୁତ ତପ କରିବାକୁ ପଡ଼େ ଆଉ ନର୍କ କଥା ଯଦି ତୋତେ ଶୁଣାଇବି ତେବେ ଶୁଣିବା ମାତ୍ରେ ମଣିଷ ମରିଯିବ, ଏତେ ଦୁଃଖ ଅଛି ସେଠାରେ ! ଶୁଣିବା ମାତ୍ରେ ଆଜିର ଲୋକ ମରିଯିବେ ଯେ, 'ଆରେରେ... ଓହୋହୋ, ମରିଗଲି', ପ୍ରାଣ ବାହାରି ଯିବ । ଏଣୁ ଏପରି କହିବ ନାହିଁ, ନଚେତ *ନିୟାଣାଂ* (ନିଜ ସବୁ ପୁଣ୍ୟ ଲଗାଇ କୌଣସି ଗୋଟିଏ ଜିନିଷର କାମନା କରିବା) ହୋଇଯିବ ।

## ଭୁଲରେ ବି ତାଙ୍କୁ ପରୋକ୍ଷ ମାନିବ ନାହିଁ

ଅନେକ ଜାଗାରେ ସୀମନ୍ଧର ସ୍ୱାମୀଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି । କେତେ ସବୁ ଜାଗାରେ ସ୍ଥାପିତ ହୋଇଥିବ, କିନ୍ତୁ ଏହି ମେହସାଣା ମନ୍ଦିର ପରି ହେବା ଉଚିତ, ତେବେ ଏହି ଦେଶର କଲ୍ୟାଣ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ସେହି କଲ୍ୟାଣ କିପରି ହେବ ?

**ଦାଦାଶ୍ରୀ :** ସୀମନ୍ଧର ସ୍ୱାମୀ ଯିଏ ତୀର୍ଥଙ୍କର ଅଟନ୍ତି, ସେ ବର୍ତ୍ତମାନ ତୀର୍ଥଙ୍କର ଅଟନ୍ତି, ତାଙ୍କୁ ମୂର୍ତ୍ତି ରୂପରେ ଭଜିବା । ଏପରି ଧରିନିଅ ଯେ ଭଗବାନ ମହାବୀର ଥାଆନ୍ତେ, ଭଗବାନ ମହାବୀରଙ୍କ ସମୟରେ ଆମେ ଥାଆନ୍ତେ ଏବଂ ଏପରି ହୋଇଥାନ୍ତା ଯେ ବିହାର କରୁ କରୁ ସେ ଏପଟକୁ ଆସି ପାରନ୍ତି ନାହିଁ ଏବଂ ତୁମେ ସେଠି ତାଙ୍କ ପାଖକୁ ଯାଇ ପାର ନାହିଁ, ଯଦି ତୁମେ ଏଠି 'ମହାବୀର, ମହାବୀର' କରିଥାନ୍ତ ତେବେ ତୁମକୁ ପ୍ରତ୍ୟକ୍ଷ ପରି ଲାଭ ହୋଇଥାନ୍ତା ନା ? ଲାଭ ହୋଇଥାନ୍ତା କି ନାହିଁ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ବର୍ତ୍ତମାନ ତୀର୍ଥଙ୍କର ଅର୍ଥାତ ? ବର୍ତ୍ତମାନ ତୀର୍ଥଙ୍କରଙ୍କ ପରମାଣୁ ବ୍ରହ୍ମାଣ୍ଡରେ ଘୂରି ବୁଲୁଥାଏ, ବର୍ତ୍ତମାନ ତୀର୍ଥଙ୍କରଙ୍କ ଦ୍ୱାରା ବହୁତ ଲାଭ ହୁଏ !

**ପ୍ରଶ୍ନକର୍ତ୍ତା :** ମୁଁ ଘରେ ବସି ସୀମନ୍ଧର ସ୍ୱାମୀଙ୍କୁ ସ୍ମରଣ କରିବି ଏବଂ ମନ୍ଦିର ଯାଇ ସ୍ମରଣ କରିବି, ସେଥିରେ କିଛି ଫରକ ଅଛି କି ?

**ଦାଦାଶ୍ରୀ :** ହଁ, ଫରକ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** କାହିଁକିନା ମନ୍ଦିରରେ ପ୍ରତିଷ୍ଠା କରା ଯାଇଛି, ପ୍ରାଣ ପ୍ରତିଷ୍ଠା ହୋଇଛି, କ'ଣ ସେଥିପାଇଁ ?

**ଦାଦାଶ୍ରୀ :** ପ୍ରତିଷ୍ଠା ହୋଇଛି ଏବଂ ସେଠାରେ ଦେବତା ମାନଙ୍କ ରକ୍ଷଣ ଅଧିକ ରହିଥାଏ ! ସେଥିପାଇଁ ସେଠାରେ ଏପରି ବାତାବରଣ ହୋଇଥାଏ ଯାହାଦ୍ୱାରା ସେଠାରେ ବହୁତ ପ୍ରଭାବ ପଡ଼େ ! ଯେପରି ତୁମେ ଦାଦାଜୀଙ୍କୁ ମନରେ ସ୍ମରଣ କରିବ ଆଉ ଏଠାରେ କରିବ, ସେଥିରେ ଫରକ ତ ବହୁତ ପଡ଼େ ନା ?

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ଆପଣ ତ ଜୀବନ୍ତ ଅଟନ୍ତି ।

**ଦାଦାଶ୍ରୀ :** ସେତିକି ଜୀବନ୍ତ ସେ ମଧ୍ୟ ଅଟନ୍ତି । ଯେତିକି ଜୀବନ୍ତ ଏ ଦାଦାଜୀ ଅଟନ୍ତି, ସେତିକି ଜୀବନ୍ତ ସେ ମଧ୍ୟ ଅଟନ୍ତି । ଅଜ୍ଞାନୀ ମାନଙ୍କ ପାଇଁ ଏ ଦାଦାଜୀ ଜୀବନ୍ତ ଅଟନ୍ତି ଏବଂ ଜ୍ଞାନୀଙ୍କ ପାଇଁ ତ ସେ ମଧ୍ୟ ସେତିକି ଜୀବନ୍ତ ଅଟନ୍ତି । କାହିଁକିନା ସେଥିରେ ଯେଉଁ ଭାଗ ଦୃଶ୍ୟମାନ ଅଟେ, ତାହା ପୂରା ମୂର୍ତ୍ତି ହିଁ ଅଟେ । ମୂର୍ତ୍ତି ବ୍ୟତୀତ ଅନ୍ୟ କିଛି ନାହିଁ । ପାଞ୍ଚ ଇନ୍ଦ୍ରିୟଗମ୍ୟ ଅଟେ, ସେଥିରେ ଅମୂର୍ତ୍ତ ନାମକୁ ମାତ୍ର ବି ନ ଥାଏ । ସବୁ ମୂର୍ତ୍ତ ହିଁ ଅଟେ ଏବଂ ଏହି ମୂର୍ତ୍ତିରେ ଫରକ ନାହିଁ, ଡିଫରେନ୍ସ ନାହିଁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏଠାରେ ଅମୂର୍ତ୍ତ ଅଛି ଏବଂ ସେଠାରେ ମୂର୍ତ୍ତିରେ ଅମୂର୍ତ୍ତ ନାହିଁ, ଏପରି ମାନନ୍ତି କି ନାହିଁ ?

**ଦାଦାଶ୍ରୀ :** ସେଠି ଅମୂର୍ତ୍ତ ନାହିଁ, କିନ୍ତୁ ମୂର୍ତ୍ତିରେ ତାଙ୍କର ପ୍ରାଣପ୍ରତିଷ୍ଠା କରାଯାଇଥାଏ । ତାହା ତ ଯେମିତି ପ୍ରତିଷ୍ଠାର ବଳ ! ଯାଙ୍କର(ସୀମନ୍ଧର ସ୍ୱାମୀ) ତ କଥା ହିଁ ଅଲଗା ! ପ୍ରକଟ ଭଗବାନଙ୍କ କଥା ହିଁ ଅଲଗା! ପ୍ରକଟ ନ ହୋଇଥିଲେ, ତେବେ କଣ ମାନେ କଣ ହୋଇଯାଇଥାନ୍ତା ।

**ପ୍ରଶ୍ନକର୍ତ୍ତା :** ଆଉ ପ୍ରକଟ ତ ହୋଇ ନଥାନ୍ତି, ବହୁତ କାଳ ପର୍ଯ୍ୟନ୍ତ ।

**ଦାଦାଶ୍ରୀ :** ଆଉ ସେ ଯଦି ନଥିବେ ତେବେ ଭୂତକାଳୀନ ତୀର୍ଥଙ୍କର, ଆମ ଚବିଶ ତୀର୍ଥଙ୍କର ତ ଅଛନ୍ତି ନା !

## ବର୍ତ୍ତମାନ ତୀର୍ଥଙ୍କର ହିଁ ହିତକାରୀ

**ପ୍ରଶ୍ନକର୍ତ୍ତା :** ଦାଦା, ଏହି ମନ୍ଦିର ଇତ୍ୟାଦି ସବୁ ତିଆରି ହେଉଛି ତେବେ ସେଥିରେ ବାସ୍ତବରେ ଆତ୍ମାର ଭାବ କରିବାର ଅଛି ନା ? ମନ୍ଦିର ଇତ୍ୟାଦିର କ'ଣ କାମ ? ବାସ୍ତବରେ

ତ ଆମକୁ ଆତ୍ମାର ହିଁ ରାସ୍ତା ଖୋଜିବାର ଅଛି ନା ?

**ଦାଦାଶ୍ରୀ :** ମନ୍ଦିର ଅବଶ୍ୟ ତିଆରି କରିବା ଉଚିତ । ଯିଏ ଚାଲି ଗଲେଣି, ତାଙ୍କ ମନ୍ଦିର ତିଆରି କରିବାର ଅର୍ଥ କ'ଣ ? ସୀମନ୍ଧର ସ୍ୱାମୀ ହାଜର ଅଛନ୍ତି, ଏଣୁ ତାଙ୍କ ଦର୍ଶନ କଲେ କଲ୍ୟାଣ ହୋଇଯିବ । ସେ ପ୍ରତ୍ୟକ୍ଷ ଅଟନ୍ତି, ସେଥିପାଇଁ କଲ୍ୟାଣ ହୋଇଯିବ । ଏପରି କିଛି ହେଲେ ହିଁ ଏହି ଲୋକଙ୍କର କଲ୍ୟାଣ ହେବ, ଏଣୁ ନିମିତ୍ତ ଦରକାର । ଅର୍ଥାତ ସୀମନ୍ଧର ସ୍ୱାମୀଙ୍କ ସଙ୍କେତ ଅବଶ୍ୟ ଫଳଦାୟୀ ଅଟେ । ଅତଃ ଯେଉଁମାନେ ଜ୍ଞାନ ନେଇ ନଥିବେ ଏବଂ ସେଠି ମନ୍ଦିରରେ ସୀମନ୍ଧର ସ୍ୱାମୀଙ୍କ ଦର୍ଶନ କରିବେ, ତେବେ ମଧ୍ୟ ଫଳ ପାଇବେ ସେଥିରେ, ସେଥିପାଇଁ ଏହି ମନ୍ଦିର ତିଆରି କରୁଅଛୁ, ନହେଲେ ଆମର ଏଠି କ'ଣ ଏମିତି ହେଉଥିବ ? ଏସବୁ ମୋତେ ଶୋଭା ଦିଏ ନାହିଁ । ଆଉ ପୁଣି ଇଏ ତ ଜୀବନ୍ତ ତୀର୍ଥଙ୍କର ଅଟନ୍ତି, ସେଥିପାଇଁ କହୁଛି । ଅନ୍ୟ ଅତୀତ କାଳର ତୀର୍ଥଙ୍କରଙ୍କ ବିଷୟରେ କହିବାର ଅର୍ଥ ହିଁ ନାହିଁ । ଅନ୍ୟ ମାନଙ୍କର ଯେତିକି ଦରକାର ସେତିକି ମନ୍ଦିର ଅଛି । ସେମାନଙ୍କର ମଧ୍ୟ ଆବଶ୍ୟକତା ଅଛି । ମୁଁ ସେଥିପାଇଁ ମନା କରୁନାହିଁ, କାରଣ ତାହା ମୂର୍ତ୍ତିପୂଜା ଅଟେ ଏବଂ ଅତୀତ କାଳର ତୀର୍ଥଙ୍କରଙ୍କ ଅଟେ ।

## ଏହା 'ମୋର' ଇଚ୍ଛା ଅଟେ

ଦୁନିଆରେ ମତଭେଦ କମ କରିଦେବାର ଅଛି । ମତଭେଦ ଯଦି ଦୂର ହୋଇଯିବ, ତେବେ ଏହି କଥାକୁ ସଠିକ ରୂପେ ବୁଝିବେ । ଏହି ମତଭେଦ ତ ଏତେ ଅଧିକ କରି ଦେଇଛନ୍ତି ଯେ ଏହା ଶିବଙ୍କ ଏକାଦଶୀ ଏବଂ ଏହା ବୈଷ୍ଣବଙ୍କ ଏକାଦଶୀ, ଏକାଦଶୀ ବି ଅଲଗା ଅଲଗା ! ସେଥିପାଇଁ ମୁଁ ମନ୍ତ୍ର ଏକାଠି କରି ଦେଇଛି ଏବଂ ମନ୍ଦିର ଅଲଗା ଅଲଗା ରଖିଛି । କାରଣ ଏହା ଏକ ପ୍ରକାରର ମାନ୍ୟତା ଅଟେ । କିନ୍ତୁ ଏହି ମନ୍ତ୍ରକୁ ସାଥିରେ ରଖ । କାରଣ ମନ, ତାହା ସର୍ବଦା ଶାନ୍ତ ରହିବା ଦରକାର । ଏମାନେ ଏହି ସବୁ ମନ୍ତ୍ର ବାଣ୍ଟି ନେଇଥିଲେ । ମୁଁ ଏସବୁକୁ ସାଥିରେ ମିଶାଇ ଏପରି ପ୍ରତିଷ୍ଠା କରିବି ଯାହା ଦ୍ୱାରା ଲୋକେ ଧୀରେ ଧୀରେ ଏସବୁ ମତଭେଦ ଭୁଲିଯିବେ । ଏହା ମୋର ଇଚ୍ଛା ଅଟେ, ଅନ୍ୟ କୌଣସି ଇଚ୍ଛା ନାହିଁ ।

ହିନ୍ଦୁସ୍ତାନ ଏପରି ସ୍ଥିତିରେ ନ ରହିବା ଉଚିତ । ଜୈନ ଏହି ସ୍ଥିତିରେ ନ ରହିବା ଉଚିତ । ସୀମନ୍ଧର ସ୍ୱାମୀଙ୍କ ମନ୍ଦିର, ତାହା ମୂର୍ତ୍ତିର ମନ୍ଦିର ନୁହେଁ ! ତାହା ଅମୂର୍ତ୍ତର ମନ୍ଦିର ଅଟେ !

## ଆରତୀ, ସୀମନ୍ଧର ସ୍ୱାମୀଙ୍କ

ବର୍ତ୍ତମାନ ସମୟରେ ଯେଉଁ ଭଗବାନ ବ୍ରହ୍ମାଣ୍ଡରେ ହାଜର ଅଛନ୍ତି, ତାଙ୍କର ଆରତୀ ଏମାନେ କରନ୍ତି, ତାହା ଦାଦା ଭଗବାନଙ୍କ ଥ୍ରୁ(Through) କରନ୍ତି ଏବଂ ମୁଁ ସେହି ଆରତୀ ତାଙ୍କ ପର୍ଯ୍ୟନ୍ତ ପହଞ୍ଚାଏ । ମୁଁ ମଧ୍ୟ ତାଙ୍କ ଆରତୀ କରେ । ଦେଢ଼ଲକ୍ଷ ବର୍ଷ ହେଲାଣି ଭଗବାନ ହାଜର ଅଛନ୍ତି, ତାଙ୍କୁ ପହଞ୍ଚାଏ ।

ଆରତୀ ସମୟରେ ସବୁ ଦେବୀ-ଦେବତା ହାଜର ଥାଆନ୍ତି । ଜ୍ଞାନୀପୁରୁଷଙ୍କ ଆରତୀ ସିଧା ସୀମନ୍ଧର ସ୍ୱାମୀଙ୍କ ପାଖରେ ପହଞ୍ଚେ । ଦେବୀ-ଦେବତା କ'ଣ କୁହନ୍ତି ଯେ ଯେଉଁଠି ପରମହଂସଙ୍କ ସଭା ହୁଏ, ସେଠି ଆମେ ହାଜର ରହୁ । ଆମର ଏହି ଆରତୀ ପଛେ କୌଣସି ମନ୍ଦିରରେ ଗାଅ, ସେଠି ଭଗବାନଙ୍କୁ ହାଜର ହେବାକୁ ହିଁ ପଡ଼େ ।

## ଅନନ୍ୟ ଭକ୍ତି, ସେଠାରେ ଦିଆଯାଇ ପାରିବ

ଆମକୁ ଯଦି ମୋକ୍ଷରେ ଯିବାର ଅଛି ତେବେ ମହାବିଦେହ କ୍ଷେତ୍ର ଯାଇ ହେବା ଭଳି ପୁଣ୍ୟ ଦରକାର । ଏଠି ତୁମେ ସୀମନ୍ଧର ସ୍ୱାମୀଙ୍କ ପାଇଁ ଯେତିକି କରିବ, ତୁମର ସେତିକି (ପୁଣ୍ୟ) ସବୁ ଆସିଯିବ । ଆଉ ଏତିକି ଯଦି କର ତେବେ ବହୁତ ହୋଇଗଲା । ସେଥିରେ ଏପରି କିଛି ନାହିଁ ଯେ ଏହା କମ ଅଟେ । ତୁମେ ଯାହା ଭାବିଥିବ (ଦାନ ଦେବା ପାଇଁ) ଯଦି ସେତିକି କରିବ ତେବେ ସବୁକିଛି ହୋଇଗଲା । ତାହାଠୁ ଅଧିକ କରିବାର ଆବଶ୍ୟକତା ନାହିଁ । ପୁଣି ଡାକ୍ତରଖାନା ତିଆରି କର ବା ଅଲଗା କିଛି କର, ସେ ସବୁ ଅଲଗା ରାସ୍ତାରେ ଯାଏ । ତାହା ମଧ୍ୟ ପୁଣ୍ୟ ଅଟେ, କିନ୍ତୁ ସଂସାରରେ ହିଁ ରଖେ ଆଉ ଏହା ପୁଣ୍ୟାନୁବନ୍ଧୀ ପୁଣ୍ୟ, ଯାହା ମୋକ୍ଷ ଯିବାରେ ହେଲ୍ପ(help) କରେ !

ଅନନ୍ତ ଜନ୍ମର ଏହି କ୍ଷତି ପୂରଣ କରିବାର ଅଛି ଆଉ ତାହା ଗୋଟିଏ ଜନ୍ମରେ ହିଁ ପୂରଣ କରିବାର ଅଛି । ସେଥିପାଇଁ ସମ୍ପୂର୍ଣ୍ଣ ରୂପେ ମୋ ପଛରେ ପଡ଼ିବା ଉଚିତ, କିନ୍ତୁ ତାହା ତୁମ କ୍ଷମତାରେ ନାହିଁ । ଅତଃ ତାଙ୍କ ସହ ତାର ଯୋଡ଼ି ଦେଉଛି, କାରଣ ସେଠାକୁ ଯିବାର ଅଛି । ଏଠାରୁ ସିଧା ମୋକ୍ଷ ହେବାର ନାହିଁ । ଏବେ ଗୋଟିଏ ଜନ୍ମ ଆଉ ବାକି ରହିବ । ତାଙ୍କ ପାଖରେ ବସିବାର ଅଛି, ସେଥିପାଇଁ ସନ୍ଧାନ କରାଇ ଦେଇଛି ଆଉ ଏହି ଭଗବାନ ପୁରା ୱାର୍ଲ୍ଡର କଲ୍ୟାଣ କରିବେ ।

## ନାମ ନେବା ମାତ୍ରେ, ତା'ର ଦୁଃଖ ଯିବ

**ପ୍ରଶ୍ନକର୍ତ୍ତା :** ଆପଣ ସୀମନ୍ଧର ସ୍ୱାମୀଙ୍କ ମନ୍ଦିର ଏଥିପାଇଁ ବନାଉଛନ୍ତି କି ଯାହା ଦ୍ୱାରା ପୁଣି ସମସ୍ତେ ସେହିପରି ଆଗକୁ ବଢ଼ିପାରିବେ ?

**ଦାଦାଶ୍ରୀ :** ସୀମନ୍ଧର ସ୍ୱାମୀଙ୍କ ନାମ ନେବ, ସେବେଠାରୁ ପରିବର୍ତ୍ତନ ହେବାକୁ ଲାଗିବ ।

**ପ୍ରଶ୍ନକର୍ତ୍ତା :** ସଦ୍‌ଗୁରୁଙ୍କ ବିନା ତ ପହଞ୍ଚି ହେବ ନାହିଁ ନା ?

**ଦାଦାଶ୍ରୀ :** ସଦ୍‌ଗୁରୁ ତ ମୋକ୍ଷ ଯିବା ପାଇଁ ସାଧନ ହୋଇଥାନ୍ତି । କିନ୍ତୁ ଏ ଲୋକମାନଙ୍କର ଯେଉଁ ଦୁଃଖ ଅଛି, ସେ ସବୁ ଚାଲିଯିବ । ପୁଣ୍ୟର ଉଦୟରେ ପରିବର୍ତ୍ତନ ହୋଇଚାଲିବ । ଏହାଦ୍ୱାରା ଏହି ବିଚରା ମାନଙ୍କ ଦୁଃଖ ରହିବ ନାହିଁ । ଏମାନେ ସମସ୍ତେ କେତେ ଦୁଃଖରେ ଫଶିହୋଇ ଅଛନ୍ତି । ଯଦି ପ୍ରତ୍ୟକ୍ଷ ସଦ୍‌ଗୁରୁ ମିଳିବେ ଏବଂ ଆତ୍ମଜ୍ଞାନ ମିଳିବ ତେବେଯାଇ ମୋକ୍ଷ ହେବ । ଆଉ ଯଦି ନ ମିଳିବ ତେବେ ପୁଣ୍ୟ ତ ଭୋଗିବ ବିଚରା । ଭଲ କର୍ମ ତ ବାନ୍ଧିବ ।

## ଦର୍ଶନର ସଠିକ ରୀତି

ଭଗବାନଙ୍କ ମନ୍ଦିରରେ ଅବା ଜିନାଳୟରେ ଯାଇ, ସଠିକ୍ ରୀତିରେ ଦର୍ଶନ କରିବାର ଇଚ୍ଛା ଯଦି ଥିବ ତେବେ, ମୁଁ ତୁମକୁ ଦର୍ଶନ କରିବାର ସଠିକ୍ ରୀତି ଶିଖାଇବି । କୁହ, କାହାର ଇଚ୍ଛା ଅଛି ?

**ପ୍ରଶ୍ନକର୍ତ୍ତା :** ହଁ, ଅଛି । ଶିଖାନ୍ତୁ ଦାଦାଶ୍ରୀ । କାଲିଠାରୁ ହିଁ ସେହି ଅନୁସାରେ ଦର୍ଶନ କରିବାକୁ ଯିବୁ ।

**ଦାଦାଶ୍ରୀ :** ଭଗବାନଙ୍କ ମନ୍ଦିରରେ ଯାଇ କହିବ ଯେ, "ହେ ବୀତରାଗ ଭଗବାନ ! ତୁମେ ମୋ ଭିତରେ ହିଁ ବସିଛ, କିନ୍ତୁ ମୋତେ ଏହାର ପରିଚୟ ହୋଇ ନାହିଁ । ସେଥିପାଇଁ ତୁମର ଦର୍ଶନ କରୁଛି । ଏହା ମୋତେ 'ଜ୍ଞାନୀପୁରୁଷ' ଦାଦା ଭଗବାନ ଶିଖାଇଛନ୍ତି । ସେଥିପାଇଁ ଏହିପରି ଆପଣଙ୍କ ଦର୍ଶନ କରୁଛି । ତେବେ ମୋତେ ମୋ ନିଜର ପରିଚୟ ହେଉ, ଆପଣ ଏପରି କୃପା କରନ୍ତୁ ।" ଯେଉଁଠିକୁ ଯିବ ସେଠି ଏହିପରି ଦର୍ଶନ କରିବ । ଏହା ତ ଅଲଗା ଅଲଗା ନାମ ଦିଆ ହୋଇଛି । 'ରିଲେଟିଭଲୀ(Relatively)' ଅଲଗା-ଅଲଗା ଅଟନ୍ତି, ସବୁ ଭଗବାନ 'ରିୟଲୀ(Realy)' ସମାନ ହିଁ ଅଟନ୍ତି ।

## ବାସ୍, ଜଣଙ୍କୁ ହିଁ

ଜଣେ ତୀର୍ଥଙ୍କର ଯଦି ରାଜି ହୋଇଯିବେ ତେବେ ଆମ ପାଇଁ ବହୁତ ହୋଇଗଲା ! ଗୋଟିଏ ଘରକୁ ଯିବା ପାଇଁ ଯଦି ଜାଗା ଥିବ ତେବେ ମଧ୍ୟ ବହୁତ ! ସବୁ ଘରମାନଙ୍କରେ କେଉଁଠି ବୁଲିବା ? ଆଉ ଜଣଙ୍କୁ ରାଜି କଲେ ଅର୍ଥାତ୍ ସମସ୍ତଙ୍କୁ ରାଜି କଲେ ଆଉ ଯିଏ ସମସ୍ତଙ୍କୁ ରାଜି କରିବାକୁ ଗଲେ, ସେମାନେ ରହିଗଲେ । ଆମ ପାଇଁ ଜଣେ ହିଁ ଭଲ, ସୀମନ୍ଧର ସ୍ୱାମୀ ! ସମସ୍ତଙ୍କୁ ପହଞ୍ଚିଯିବ ।

ଏଣୁ ସୀମନ୍ଧର ସ୍ୱାମୀଙ୍କର ଠିକ୍ ରୂପେ ଧ୍ୟାନ ଲଗାଅ । 'ପ୍ରଭୁ, ସର୍ବଦା ପାଇଁ ଆପଣଙ୍କ ଅନନ୍ୟ ଶରଣ ଦିଅନ୍ତୁ' ଏପରି ମାଗ ।

## ପ୍ରତିକୃତି ଦ୍ୱାରା ଏହିଠାରେ ପ୍ରାପ୍ତି

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ସୀମନ୍ଧର ସ୍ୱାମୀଙ୍କୁ ଜଣାପଡୁଥିବ ନା ଯେ ଏହି ଦାଦାଜୀ ମୋ କାମ କରୁଛନ୍ତି ?

**ଦାଦାଶ୍ରୀ :** ଏପରି ନୁହେଁ, କିନ୍ତୁ ତୁମେ ଯଦି ସ୍ମରଣ କରିବ ତେବେ ତୁମକୁ ଫଳ ମିଳିବ । ସିଦ୍ଧ ଭଗବନ୍ତଙ୍କୁ ସ୍ମରଣ କଲେ ଫଳ ମିଳିବ ନାହିଁ । ଇଏ ଦେହଧାରୀ ଅଟନ୍ତି । ତୁମେ ଗୋଟିଏ ଜନ୍ମ ପରେ ସେଠାକୁ ଯାଇପାରିବ । ସେଠି ତାଙ୍କ ଶରୀରକୁ ତୁମେ ହାତରେ ଛୁଇଁ ପାରିବ ।

**ପ୍ରଶ୍ନକର୍ତ୍ତା :** ହଁ, ଦାଦାଜୀ, ଆମକୁ ଚାନ୍ସ(Chance) ମିଳିବ ନା ?

**ଦାଦାଶ୍ରୀ :** ସବୁ ମିଳିବ । କାହିଁକି ମିଳିବନି ? ସୀମନ୍ଧର ସ୍ୱାମୀଙ୍କ ନାମ ହିଁ ତ ତୁମେ ଜପ କରୁଛ । ସୀମନ୍ଧର ସ୍ୱାମୀଙ୍କୁ ତୁମେ ନମସ୍କାର କରୁଛ । ସେଠାକୁ ତ ଯିବାର ଅଛି ଆମକୁ, ସେଥିପାଇଁ ଆମେ ତାଙ୍କୁ କହୁ ଯେ 'ସାହେବ ! ଯଦିଓ ତୁମେ ପଛେ ସେଠି ବସିଛ, ଆମକୁ ଦେଖାଯାଉ ନାହଁ, କିନ୍ତୁ ଏଠି ଆମେ ଆପଣଙ୍କର ପ୍ରତିକୃତି ତିଆରି କରି ଆପଣଙ୍କ ଦର୍ଶନ କରୁଛୁ ।' ବାରଫୁଟ୍‌ର ମୂର୍ତ୍ତି ରଖି ଆମେ ତାଙ୍କର ଦର୍ଶନ କରୁଛୁ, ତାଙ୍କୁ ସ୍ମରଣ କରୁଛେ, କାରଣ ଏହା ଜୀବିତ ଭଗବାନଙ୍କ ପ୍ରତିକୃତି ଅଟେ, ଏଣୁ ଭଲ ହୋଇଥାଏ । ଯିଏ ଗଲେ ତାଙ୍କ ଦସ୍ତଖତ କାମରେ ଆସେ ନାହିଁ, ତାଙ୍କ ପ୍ରତିକୃତି ତିଆରି କରି କି ଲାଭ ? ଇଏ ତ କାମରେ ଆସନ୍ତି । ଇଏ ତ ଅରିହନ୍ତ ଭଗବାନ !

**ପ୍ରଶ୍ନକର୍ତ୍ତା :** ଏମାନେ ସମସ୍ତେ ଦାଦା ଭଗବାନଙ୍କ କୀର୍ତ୍ତନ କରୁଥିଲେ, ତେବେ ଆପଣ ମଧ୍ୟ କିଛି କହି କୀର୍ତ୍ତନ କରୁଥିଲେ, ତାହା କାହାର ?

**ଦାଦାଶ୍ରୀ :** ମୁଁ ମଧ୍ୟ କହୁଥିଲି ! ମୁଁ ଦାଦା ଭଗବାନଙ୍କୁ ନମସ୍କାର କରେ । ଦାଦା ଭଗବାନଙ୍କର ତିନିଶହ ଷାଠିଏ ଡିଗ୍ରୀ । ମୋର ତିନିଶହ ଛପନ ଡିଗ୍ରୀ । ମୋର ଚାରି ଡିଗ୍ରୀ କମ୍ । ସେଥିପାଇଁ ମୁଁ ପ୍ରଥମେ କୀର୍ତ୍ତନ କରିବା ଆରମ୍ଭ କଲି ଯାହା ଦ୍ୱାରା ଏମାନେ ସମସ୍ତେ କରିବେ । ଏମାନଙ୍କର ବି ଡିଗ୍ରୀ କମ୍ ଅଛି ନା !

**ପ୍ରଶ୍ନକର୍ତ୍ତା :** ଆପଣ ଯାହାଙ୍କୁ 'ଦାଦା ଭଗବାନ' କହୁଛନ୍ତି, ସେ ଏବଂ ଏହି ସୀମନ୍ଧର ସ୍ୱାମୀ, ଏମାନଙ୍କ ମଧ୍ୟରେ କି ସମ୍ବନ୍ଧ ?

**ଦାଦାଶ୍ରୀ :** ଓହୋହୋ ! ସେମାନେ ତ ସମାନ ହିଁ ଅଟନ୍ତି । କିନ୍ତୁ ସୀମନ୍ଧର ସ୍ୱାମୀ ଦେଖାଇବାର କାରଣ ଏହା ଯେ ଏବେ ମୁଁ ଦେହ ସହିତ ଅଛି, ମୋତେ ମଧ୍ୟ ସେଠାକୁ ଯିବାର ଆବଶ୍ୟକତା ଅଛି । କାରଣ ଯେପର୍ଯ୍ୟନ୍ତ ସୀମନ୍ଧର ସ୍ୱାମୀଙ୍କ ଦର୍ଶନ ହୋଇ ନାହିଁ, ସେପର୍ଯ୍ୟନ୍ତ ମୁକ୍ତ ହେବ ନାହିଁ । ଏକ ଜନ୍ମ ବାକି ରହିବ । ମୁକ୍ତି ତ ଯିଏ ମୁକ୍ତ ହୋଇ ସାରିଛନ୍ତି, ତାଙ୍କ ଦର୍ଶନ ଦ୍ୱାରା ମିଳିବ । ସେମିତିରେ ତ ମୁଁ ବି ମୁକ୍ତ ହୋଇଛି କିନ୍ତୁ ସେ ସମ୍ପୂର୍ଣ୍ଣ ମୁକ୍ତ ଅଟନ୍ତି । ମୋ ପରି ସେ ଲୋକମାନଙ୍କୁ ଏପରି କୁହନ୍ତି ନାହିଁ ଯେ 'ଏମିତି ଆସିବ ଆଉ ସେମିତି ଆସିବ । ମୁଁ ତୁମକୁ ଜ୍ଞାନ ଦେବି' ଏପରି ଖଟପଟ କରନ୍ତି ନାହିଁ ।

## 'ସୀମନ୍ଧର ସ୍ୱାମୀ ନା ଅସୀମ ଜୟ ଜୟକାର ହୋ' ଗାଇ ପାରିବୁ ?

**ପ୍ରଶ୍ନକର୍ତ୍ତା :** 'ସୀମନ୍ଧର ସ୍ୱାମୀଙ୍କୁ ନିଶ୍ଚୟ ସହ ନମସ୍କାର କରୁଛି', ଏପରି ଯେଉଁ କହୁଛୁ, ତେବେ ନିଶ୍ଚୟରେ ହିଁ କହିବାର ଅଛି, ନା ବ୍ୟବହାରରେ କହିବାର ଅଛି ?

**ଦାଦାଶ୍ରୀ :** ନିଶ୍ଚୟରେ । ଆଉ ଦେହ ତ ଉଚ୍ଚା-ନିଚ୍ଚା ହୋଇପାରେ, ଆମକୁ ଦେହ ସହିତ ନେବା-ଦେବା ନାହିଁ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ୍ 'ମୁଁ ସୀମନ୍ଧର ସ୍ୱାମୀଙ୍କୁ ନିଶ୍ଚୟ ସହ ନମସ୍କାର କରୁଛି', ଏପରି ଯେଉଁ କହୁଛି, ତାହା ଠିକ୍ ଅଟେ ନା ?

**ଦାଦାଶ୍ରୀ :** ଠିକ ଅଟେ । ବ୍ୟବହାରରେ ଅର୍ଥାତ୍ ଦେହରୁ । ଆଉ ଏହି ନମସ୍କାର ବିଧିରେ ଯେଉଁ ଅନ୍ୟ ସବୁ ନମସ୍କାର ଅଛି ନା, ସେସବୁ ବ୍ୟବହାରର ଅଟେ । ଏଠି ଏହି ଗୋଟିଏ ହିଁ ନମସ୍କାର ନିଶ୍ଚୟର ଅଟେ ।

**ପ୍ରଶ୍ନକର୍ତ୍ତା :** ଦାଦା ଭଗବାନଙ୍କ ନମସ୍କାର ନିଶ୍ଚୟ ସହ ଅଛି ?

**ଦାଦାଶ୍ରୀ :** ହଁ, ବାସ୍ । ଅର୍ଥାତ୍ ବାସ୍ତବରେ ଏହିଠାରେ ତୁମକୁ ନିଶ୍ଚୟ ସହ ନମସ୍କାର କରିବା ଉଚିତ ଏବଂ ବାକି ସବୁ ଭଗବନ୍ତଙ୍କୁ ବ୍ୟବହାରରେ ନମସ୍କାର କରୁଛି । ଏବେ

ସୀମନ୍ଧର ସ୍ୱାମୀଙ୍କ ପାଇଁ ନିଶ୍ଚୟ ସହ କହିବ ତେବେ ଅସୁବିଧା ନାହିଁ, ତାହା ତ ଭଲ କଥା । ସେଠି ମୁଁ ନିଶ୍ଚୟ ଲେଖିବି ତେବେ ସବୁ ଜାଗାରେ ନିଶ୍ଚୟ ଲେଖିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ହଁ, ହଁ, ଠିକ୍ ଅଛି ।

**ଦାଦାଶ୍ରୀ :** କେବଳ 'ଦାଦା ଭଗବାନ'ଙ୍କୁ ହିଁ ନିଶ୍ଚୟରେ କରିଛି ।

**ପ୍ରଶ୍ନକର୍ତ୍ତା :** *'ଦାଦା ଭଗବାନ ନା ଅସୀମ ଜୟ ଜୟକାର ହୋ'*, ଯେପରି ଗାଉଛୁ, ସେହିପରି *'ସୀମନ୍ଧର ସ୍ୱାମୀ ନା ଅସୀମ ଜୟ ଜୟକାର ହୋ'* ଗାଇ ପାରିବୁ ?

**ଦାଦାଶ୍ରୀ :** ଖୁସିରେ ଗାଇ ପାରିବା । କିନ୍ତୁ ଦାଦା ଭଗବାନଙ୍କ ଜୟ ଜୟକାର ଗାଇବା ସମୟରେ ଭିତରେ ଯେଉଁ ଆନନ୍ଦ ହୁଏ, ସେପରି ଆନନ୍ଦ ସେଥିରେ ହେବ ନାହିଁ । କାରଣ ଇଏ(ଦାଦା ଭଗବାନ) ପ୍ରତ୍ୟକ୍ଷ ଅଟନ୍ତି । ସେଇ(ସୀମନ୍ଧର ସ୍ୱାମୀ) ପ୍ରତ୍ୟକ୍ଷ ତୁମେ ଦେଖି ପାରିବ ନାହିଁ, କିନ୍ତୁ ଗାଇ ପାରିବ । ସୀମନ୍ଧର ସ୍ୱାମୀଙ୍କ ପାଇଁ ଯାହା ଇଚ୍ଛା ଗାଇ ପାରିବ, କାରଣ ସେ ଆମର ଶିରୋମାନ୍ୟ ଭଗବାନ ଅଟନ୍ତି ଏବଂ ରହିବେ । ଯେପର୍ଯ୍ୟନ୍ତ ଆମେ ସବୁ ମୁକ୍ତ ନ ହୋଇଛେ, ସେପର୍ଯ୍ୟନ୍ତ ଶିରୋମାନ୍ୟ ରହିବେ । ଏହା ତ ମୁଁ ଆଙ୍ଗୁଳି ନିର୍ଦ୍ଦେଷ କରିଛି, ଯେ ଯାହାକୁ ଏପରି କରିବା ଆସିଗଲା, ତେବେ ତା'ର କଲ୍ୟାଣ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ହଁ ଆଙ୍ଗୁଳି ନିର୍ଦ୍ଦେଷ ଅଟେ । ସବୁ ଠିକ୍ ଅଟେ ।

**ଦାଦାଶ୍ରୀ :** ଏସବୁ ଆଙ୍ଗୁଳି ନିର୍ଦ୍ଦେଶ ଅଟେ । ଏବେ ପର୍ଯ୍ୟନ୍ତ କେହି ଆଙ୍ଗୁଳି ନିର୍ଦ୍ଦେଶ ଦେଇ ନଥିଲେ, କ'ଣ କରିବା ତେବେ ! ସବୁ କଥା କହି ଥିବେ କିନ୍ତୁ ଆଙ୍ଗୁଳି ନିର୍ଦ୍ଦେଶ କଲେ ନାହିଁ ଯେ ଏପରି କର !

**ପ୍ରଶ୍ନକର୍ତ୍ତା :** ଏହା ତ ମୁଁ ସେ ଦିନ ଗାଉଥିଲି ନା, ସେତେବେଳେ ଜଣେ ଭାଇ କହିଲେ ଯେ ଏପରି ଗାଇପାରିବା ନାହିଁ । ନିଶ୍ଚୟରେ କହି ପାରିବା ନାହିଁ, ସେଥିପାଇଁ ମୁଁ ପଚାରିଲି ।

**ଦାଦାଶ୍ରୀ :** ନା, ଏପରି ଗାଇଲେ ଅସୁବିଧା ନାହିଁ । ଏହାଦ୍ୱାରା କିଛି ପାପ ଲାଗିବ ଏପରି ନୁହେଁ । କିନ୍ତୁ ଯଦି ଜ୍ଞାନୀପୁରୁଷଙ୍କ କହିବା ଅନୁସାରେ ଗାଇବ, ତେବେ ସେଥିରେ ବହୁତ ଫରକ ପଡ଼ିଯାଏ । ଯଦି ଗାଇ ଦେଇଥିବ, ତେବେ ତାହାର ଦୋଷ ନାହିଁ । ପ୍ରତିକ୍ରମଣ କରିବାକୁ ପଡ଼ିବ ନାହିଁ । ଯଦି ସୀମନ୍ଧର ସ୍ୱାମୀଙ୍କର କେବଳ ନାମ ମଧ୍ୟ ନେବ, ତେବେ ତା'କୁ ଫାଇଦା ହୋଇଯିବ ।

## ଯେଉଁଠି ପ୍ୟୋରିଟୀ(Purity), ସେଠି ପ୍ରସ୍ତୁତି

ମୋ ଧ୍ୟେୟ କ'ଣ ? ମୁଁ ତ ନିଜ ଖର୍ଚ୍ଚରେ ଲୁଗା ପିନ୍ଧେ । ଏ ନୀରୂବେନ ମଧ୍ୟ ନିଜ ଖର୍ଚ୍ଚରେ ଲୁଗା ପିନ୍ଧେ । ଏକ ପଇସା କାହାଠୁ ନେବାର ନାହିଁ ଏବଂ ଜଗତ କଲ୍ୟାଣ ପାଇଁ ସବୁ ପ୍ରସ୍ତୁତି ଅଛି । ପାଖାପାଖି ପଚାଷ ହଜାର ସମକିତଧାରୀ ମୋ ପାଖରେ ଅଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଦୁଇଶହ ବ୍ରହ୍ମଚାରୀ । ସେମାନେ ସମସ୍ତେ ଜଗତ କଲ୍ୟାଣ ପାଇଁ ପ୍ରସ୍ତୁତ ହୋଇଯିବେ ।

## ଆଜ୍ଞା କରାଏ, ମହାବିଦେହର ଯୋଗ୍ୟ ! !

ଏହି ଜ୍ଞାନ ନେବା ପରେ ତୁମର ଏହି ଜନ୍ମ, ମହାବିଦେହ ଯିବା ପାଇଁ ଯୋଗ୍ୟ ହେବାରେ ଲାଗିଛି । ମୋତେ କିଛି କରିବାର ଆବଶ୍ୟକତା ନାହିଁ । ନେଚୁରାଲ(Natural, ପ୍ରାକୃତିକ) ନିୟମ ହିଁ ଅଟେ ।

**ପ୍ରଶ୍ନକର୍ତ୍ତା :** ମହାବିଦେହ କ୍ଷେତ୍ର କିପରି ଯାଇ ପାରିବୁ, ପୁଣ୍ୟଦ୍ୱାରା ?

**ଦାଦାଶ୍ରୀ :** ଏହି ଯେଉଁ ମୋ ଆଜ୍ଞା ପାଳନ କରୁଛ, ତାହାଦ୍ୱାରା ଏହି ଜନ୍ମରେ ପୁଣ୍ୟ ହିଁ ବାନ୍ଧି ହେଉଅଛି, ତାହା ମହାବିଦେହ କ୍ଷେତ୍ର ନେଇଯିବ । ଆଜ୍ଞା ପାଳନଦ୍ୱାରା ଧର୍ମଧ୍ୟାନ ହୁଏ, ସେ ସବୁ ଫଳ ଦିଏ । ଯେତେ ମୋ ଆଜ୍ଞା ପାଳିବ, ସେତେ ପୁଣ୍ୟ ବନ୍ଧନ ହୁଏ । ତାହାଦ୍ୱାରା ପୁଣି ସେଠାରେ ତୀର୍ଥଙ୍କରଙ୍କ ପାଖରେ ଫଳ ଭୋଗିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ଆମ ମହାତ୍ମା ମାନଙ୍କର ଅଳିଆ ପରି *ଆଚାର* (ଆଚରଣ) ଦେଖି ସୀମନ୍ଧର ସ୍ୱାମୀ ଆମକୁ ସେଠି ରଖିବେ ?

**ଦାଦାଶ୍ରୀ :** ସେତେବେଳେ ଏପରି *ଆଚାର* ରହିବ ନାହିଁ । ଏବେ ଯେଉଁ ତୁମେ ମୋ ଆଜ୍ଞାର ପାଳନ କରୁଛ, ତାହାର ଫଳ ସେହି ସମୟରେ ସାମ୍ନାକୁ ଆସିବ । ଆଉ ଏବେ ଯେଉଁ ଅଳିଆ ମାଲ ଅଛି, ତାହା ମୋତେ ପଚାରିବା ବିନା ଭରିଥିଲ, ତାହା ବାହାରୁ ଅଛି ।

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ସୀମନ୍ଧର ସ୍ୱାମୀଙ୍କୁ ସ୍ମରଣ କରିବାଦ୍ୱାରା, ସୀମନ୍ଧର ସ୍ୱାମୀଙ୍କ ପାଖକୁ ଯାଇ ପାରିବୁ, ଏହା ନିଶ୍ଚିତ ହୋଇ ପାରିବ ନା ?

**ଦାଦାଶ୍ରୀ :** ଯିବାର ଅଛି, ଏହା ତ ନିଶ୍ଚିତ ହିଁ ଅଟେ । ସେଥିରେ ନୂଆ କିଛି ନାହିଁ, କିନ୍ତୁ ନିରନ୍ତର ସ୍ମରଣ କଲେ ଅଲଗା କିଛି ନୂତନ ଭିତରେ ପଶିବ ନାହିଁ । ଦାଦାଜୀ ସ୍ମରଣ ରହୁଥିଲେ ଅବା ତୀର୍ଥଙ୍କର ସ୍ମରଣ ରହୁଥିଲେ, ତେବେ ମାୟା ପଶିବ ନାହିଁ ! ଏବେ ଏଠାକୁ

ମାୟା ଆସିବ ନାହିଁ ।

## ଦାୟିତ୍ୱ କାହାର ନେଇଛି ?

ମୋର ସୀମନ୍ଧର ସ୍ୱାମୀଙ୍କ ସହିତ ସମ୍ବନ୍ଧ ଅଛି । ମୁଁ ସବୁ ମହାତ୍ମାଙ୍କ ମୋକ୍ଷର ଦାୟିତ୍ୱ ନେଇଛି । ଯେଉଁମାନେ ମୋ ଆଜ୍ଞା ପାଳନ୍ତି, ସେମାନଙ୍କର ଦାୟିତ୍ୱ ମୁଁ ନିଏ ।

ଏହି ଜ୍ଞାନ ପାଇବା ପରେ ଏକାବତାରୀ ହୋଇ, ସୀମନ୍ଧର ସ୍ୱାମୀଙ୍କ ପାଖକୁ ଯାଇ ସେଠାରୁ ମୋକ୍ଷରେ ଚାଲିଯାଆନ୍ତି । କାହାର ଦୁଇ ଅବତାର ବି ହୋଇପାରେ । କିନ୍ତୁ ଯଦି ମୋ ଆଜ୍ଞା ପାଳେ ତେବେ ଚାରି ଅବତାରରୁ ଅଧିକ ହେବ ନାହିଁ । ଏହିଠାରେ ମୋକ୍ଷ ହୋଇଯିବ । 'ଏଠି ଯଦି ଗୋଟିଏ ବି ଚିନ୍ତା ହେବ ତେବେ କେଶ୍ ଦାଖଲ କରିବ' ଏପରି କୁହେ । ଏହା ତ ବୀତରାଗ ବିଜ୍ଞାନ ଅଟେ । ଚବିଶ ତୀର୍ଥଙ୍କରଙ୍କ ସମ୍ମିଳିତ ବିଜ୍ଞାନ ଅଟେ ।

## କେବଳ ସୀମନ୍ଧର ସ୍ୱାମୀ ହିଁ ମୋ ଉପରୀ

**ପ୍ରଶ୍ନକର୍ତ୍ତା :** ଆମର ତ ଆପଣ ରକ୍ଷକ ଅଟନ୍ତି, କିନ୍ତୁ ଆପଣଙ୍କ ଉପରେ କିଏ ? ଆପଣଙ୍କୁ ତ ନିୟମରେ ହିଁ ଚାଲିବାକୁ ପଡ଼େ ନା ଯିଏ ଆସେ ତା' ସହ ?

**ଦାଦାଶ୍ରୀ :** ବହୁତ ନିୟମପୂର୍ବକ ! ଆଉ ମୋ ଉପରୀ ତ ଇଏ ବସିଛନ୍ତି, କେବଳ ସୀମନ୍ଧର ସ୍ୱାମୀ, ସେ ହିଁ ଅଟନ୍ତି ! ସେ ହିଁ ମୋର ଉପରୀ ଅଟନ୍ତି । ମୁଁ ତାଙ୍କଠାରୁ କିଛି ମାଗେ ନାହିଁ । ମଗାଯାଇ ପାରିବ ନାହିଁ ନା ! ତୁମେ ମୋତେ ମାଗି ପାରିବ ! !

## ଅହୋ ! ସେ ଅଦ୍‌ଭୁତ ଦର୍ଶନ ! !

**ପ୍ରଶ୍ନକର୍ତ୍ତା :** ଆମେ ତ ଦାଦାଙ୍କ ଭିସା(Visa) ଦେଖାଇବୁ ।

**ଦାଦାଶ୍ରୀ :** ଭିସା ଦେଖାଇବା ମାତ୍ରେ ଆପେ ଆପେ କାମ ହୋଇଯିବ । ତୀର୍ଥଙ୍କରଙ୍କୁ ଦେଖିବା ମାତ୍ରେ ତୁମ ଆନନ୍ଦର ସୀମା ରହିବ ନାହିଁ, ଦେଖୁ ଦେଖୁ ଆନନ୍ଦ ! ସାରା ଜଗତ ବିସ୍ମୃତ ହୋଇଯିବ ! ଜଗତର କିଛି ଖାଇବା-ପିଇବା ଭଲ ଲାଗିବ ନାହିଁ । ସେହି ସମୟରେ ପୂର୍ଣ୍ଣ ହୋଇଯିବ ! ନିରାଲମ୍ବ ଆତ୍ମା ପ୍ରାପ୍ତ ହେବ ! ପରେ କୌଣସି ଅବଲମ୍ବନ ରହିବ ନାହିଁ ।

## ସମ୍ୟକ ଦୃଷ୍ଟି, ତାହା ହିଁ ଭିସା

**ପ୍ରଶ୍ନକର୍ତ୍ତା :** ଆପଣ କହିଛନ୍ତି, ତୀର୍ଥଙ୍କରଙ୍କ ଦର୍ଶନ କଲେ ମନୁଷ୍ୟକୁ କେବଳଜ୍ଞାନ ହୋଇଯିବ !

**ଦାଦାଶ୍ରୀ :** ତୀର୍ଥଙ୍କରଙ୍କ ଦର୍ଶନ ତ ବହୁତ ଲୋକ କରିଥିଲେ । ଆମେ ସବୁ କରିଥିଲେ କିନ୍ତୁ ସେତେବେଳେ ଆମର ପ୍ରସ୍ତୁତି ନଥିଲା । ଦୃଷ୍ଟି ପରିବର୍ତ୍ତନ ହୋଇ ନଥିଲା, ମିଥ୍ୟା ଦୃଷ୍ଟି ଥିଲା । ସେହି ମିଥ୍ୟା ଦୃଷ୍ଟିର, ତୀର୍ଥଙ୍କର ବି କ'ଣ କରିବେ ? ଯାହାର ସମ୍ୟକ ଦୃଷ୍ଟି ଥିବ, ତା'ଉପରେ ତୀର୍ଥଙ୍କରଙ୍କ କୃପା ବରଷି ଯାଏ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ୍ ଯାହାର ପ୍ରସ୍ତୁତି ଥିବ, ତା'କୁ ଦର୍ଶନ ହେବାଦ୍ୱାରା ମୋକ୍ଷ ହୋଇଯାଏ ।

**ଦାଦାଶ୍ରୀ :** ସେଥିପାଇଁ ଆମକୁ ଏଠି ପ୍ରସ୍ତୁତ ହୋଇଯିବାର ଅଛି । କାରଣ ଏତିକି ହିଁ ଆବଶ୍ୟକ ଯେ ପ୍ରସ୍ତୁତ ହୋଇ, ଭିସା ନେଇକି ଯାଅ । ଆଉ ପଛେ ଯେଉଁଠାକୁ ବି ଯିବ, ସେଠି କେହି ନା କେହି ତୀର୍ଥଙ୍କର ମିଳିଯିବେ ।

## ସୀମନ୍ଧର ସ୍ୱାମୀଙ୍କୁ ହିଁ ପୂଜା କର

ହିନ୍ଦୁସ୍ତାନରେ ଯଦି ଘରେ-ଘରେ ସୀମନ୍ଧର ସ୍ୱାମୀଙ୍କ ଫଟୋ ରହେ ତେବେ କାମ ହୋଇଯିବ । କାରଣ ସେ ଜୀବନ୍ତ ଅଟନ୍ତି । ଯଦି ମୋ ଫଟୋ ନଥିବ ତେବେ ମଧ୍ୟ ଚଳିବ କିନ୍ତୁ ତାଙ୍କର ରଖିବ । ପଛେ ଲୋକେ ତାଙ୍କୁ ନ ଚିହ୍ନିଥାନ୍ତୁ ଏବଂ ସେମିତି ହିଁ ଦର୍ଶନ କରିବେ, ତେବେ ମଧ୍ୟ କାମ ହୋଇଯିବ । ଏହି ସୀମନ୍ଧର ସ୍ୱାମୀଙ୍କ ଚିତ୍ରପଟ ବହୁତ ଭଲ ବାହାରିଛି ଏବଂ ସବୁ ଜାଗାରେ ଯଦି ପହଞ୍ଚିଯିବ, ତେବେ କାମ ହୋଇଯିବ । ବୈଷ୍ଣବ, ଜୈନ, ଅନ୍ୟ ସବୁ ଘରେ ପହଞ୍ଚିଯିବେ । ସେ ହାଜର ଅଛନ୍ତି, ନଗଦ ଫଳ ଦିଅନ୍ତି ।

ଏହି ମନ୍ଦିର ଏଥିପାଇଁ ତିଆରି ହୋଇଛି ଯେ ଜଗତ ସୀମନ୍ଧର ସ୍ୱାମୀଙ୍କୁ ଚିହ୍ନି ପାରିବ । ସୀମନ୍ଧର ସ୍ୱାମୀ କିଏ, ତାହା ଜାଣି ପାରିବ । ଘରେ-ଘରେ ସୀମନ୍ଧର ସ୍ୱାମୀଙ୍କ ଫଟୋର ପୂଜା ହେବ, ଆରତୀ ହେବ ଏବଂ ସବୁ ଜାଗାରେ ସୀମନ୍ଧର ସ୍ୱାମୀଙ୍କ ମନ୍ଦିର ନିର୍ମାଣ ହେବ, ସେତେବେଳେ ଦୁନିଆର ନକ୍ସା କିଛି ଅଲଗା ହିଁ ହେବ !!

## ମୋକ୍ଷ ସ୍ୱରୂପୀଙ୍କ ସାନିଧ୍ୟରେ

ଆଉ ମୁଁ ଏଠାରେ ଦେଖାଯାଉଛି ନିଶ୍ଚିତ କିନ୍ତୁ ସୀମନ୍ଧର ସ୍ୱାମୀଙ୍କ ସାମ୍ନାରେ ହିଁ ବସି ରହିଥାଏ ଏବଂ ସେଠାରେ ତୁମକୁ ଦର୍ଶନ କରାଏ । ମୋର ତାଙ୍କ ସହ ଚିହ୍ନା ପରିଚୟ ଅଛି, ସୀମନ୍ଧର ସ୍ୱାମୀ ମୋ ଦାଦାଙ୍କର ବି ଦାଦା ଅଟନ୍ତି ! ଶେଷରେ ଯଦି ଦେଖାଯାଏ ତେବେ ଆମକୁ ଯାହା ଦରକାର, ସେ ତାହା ହିଁ ଅଟନ୍ତି !

ଆଉ ଯଦି ସୀମନ୍ଧର ସ୍ୱାମୀଙ୍କ ପାଖରେ ବସି ରହିବ, ସେହି ମୂର୍ତ୍ତି ପାଖରେ ଯଦି ବସି ରହିବ, ତେବେ ମଧ୍ୟ ହେଲ୍ପ ହେବ । ମୁଁ ମଧ୍ୟ ବସି ରହିଥାଏ, ମୋତେ ତ ମୋକ୍ଷ ମିଳି ଯାଇଛି, ତଥାପି ମୁଁ ବସିଥାଏ, ନହେଲେ ମୋତେ ତାଙ୍କଠାରେ କି କାମ ? କାରଣ ଏବେ ସେ ମୋର ଉପରୀ ଅଟନ୍ତି । ତାଙ୍କ ଦର୍ଶନ କଲେ ମୋକ୍ଷ ହେବ ନହେଲେ ମୋକ୍ଷ ହେବ ନାହିଁ । ତାଙ୍କ ଦର୍ଶନ କଲେ, କାହାର ଦର୍ଶନ ? ମୋକ୍ଷ ସ୍ୱରୂପଙ୍କ । ଦେହ ସହିତ ଯାହାର ସ୍ୱରୂପ ମୋକ୍ଷ ଅଟେ ।

**- ଜୟ ସଚ୍ଚିଦାନନ୍ଦ**



# ପ୍ରାତଃ ବିଧି

## (ପ୍ରତିଦିନ ସକାଳେ ଥରେ କରନ୍ତୁ)

## (ଶୁଦ୍ଧାତ୍ମାର ଲକ୍ଷ୍ୟ ସହ କୁହନ୍ତୁ)

- ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କରୁଛି । (୫)
- ବାତ୍ସଲ୍ୟମୂର୍ତ୍ତି 'ଦାଦା ଭଗବାନ'ଙ୍କୁ ନମସ୍କାର କରୁଛି । (୫)
- ପ୍ରାପ୍ତ ମନ-ବଚନ-କାୟା ଦ୍ୱାରା ଏହି ସଂସାରର କୌଣସି ବି ଜୀବକୁ କିଞ୍ଚିତ୍‌ମାତ୍ର ବି ଦୁଃଖ ନ ହେଉ, ନ ହେଉ, ନ ହେଉ । (୫)
- କେବଳ ଶୁଦ୍ଧାତ୍ମାନୁଭବ ବ୍ୟତୀତ ଏହି ସଂସାରର କୌଣସି ବିନାଶୀ ଜିନିଷ ମୋତେ ଦରକାର ନାହିଁ । (୫)
- ପ୍ରକଟ ଜ୍ଞାନୀପୁରୁଷ ଦାଦା ଭଗବାନଙ୍କ ଆଜ୍ଞାରେ ହିଁ ନିରନ୍ତର ରହିବା ପାଇଁ ପରମ ଶକ୍ତି ପ୍ରାପ୍ତ ହେଉ, ପ୍ରାପ୍ତ ହେଉ, ପ୍ରାପ୍ତ ହେଉ । (୫)
- ଜ୍ଞାନୀପୁରୁଷ 'ଦାଦା ଭଗବାନ'ଙ୍କ ବୀତରାଗ ବିଜ୍ଞାନର ଯଥାର୍ଥ ରୂପରେ,ସମ୍ପୂର୍ଣ୍ଣ-ସର୍ବାଙ୍ଗ ରୂପରେ କେବଳଜ୍ଞାନ, କେବଳଦର୍ଶନ ଏବଂ କେବଳଚାରିତ୍ରରେ ପରିଣମନ ହେଉ, ପରିଣମନ ହେଉ, ପରିଣମନ ହେଉ । (୫)



# ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ପ୍ରାର୍ଥନା

ହେ ନିରାଗୀ, ନିର୍ବିକାରୀ, ସଚ୍ଚିଦାନନ୍ଦ ସ୍ୱରୂପ, ସହଜାନନ୍ଦୀ, ଅନନ୍ତଜ୍ଞାନୀ, ଅନନ୍ତଦର୍ଶୀ, ତ୍ରୈଲୋକ୍ୟ ପ୍ରକାଶକ, ପ୍ରତ୍ୟକ୍ଷ-ପ୍ରକଟ ଜ୍ଞାନୀପୁରୁଷ ଶ୍ରୀ ଦାଦା ଭଗବାନଙ୍କ ସାକ୍ଷୀରେ, ଆପଣଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରି, ଆପଣଙ୍କ ଅନନ୍ୟ ଶରଣ ସ୍ୱୀକାର କରୁଛି । ହେ ପ୍ରଭୁ ! ମୋତେ ଆପଣଙ୍କ ଚରଣକମଳରେ ସ୍ଥାନ ଦେଇ ଅନନ୍ତକାଳର ଭୟଙ୍କର ଭଟକଣର ଅନ୍ତ ଆଣିବାର କୃପା କରନ୍ତୁ, କୃପା କରନ୍ତୁ, କୃପା କରନ୍ତୁ ।

ହେ ବିଶ୍ୱବନ୍ଦ୍ୟ ଏପରି ପ୍ରକଟ ପରମାତ୍ମ ସ୍ୱରୂପ ପ୍ରଭୁ ! ଆପଣଙ୍କ ସ୍ୱରୂପ ହିଁ ମୋ ସ୍ୱରୂପ ଅଟେ । କିନ୍ତୁ ଅଜ୍ଞାନତା କାରଣରୁ ମୋତେ ମୋ ପରମାତ୍ମ ସ୍ୱରୂପ ବୁଝାପଡୁ ନାହିଁ । ଏଥିପାଇଁ ଆପଣଙ୍କ ସ୍ୱରୂପରେ ହିଁ ମୁଁ ନିଜ ସ୍ୱରୂପର ନିରନ୍ତର ଦର୍ଶନ କରେ ଏପରି ମୋତେ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ହେ ପରମତାରକ ଦେବାଧିଦେବ, ସଂସାରରୂପୀ ନାଟକର ଆରମ୍ଭ କାଳରୁ ଆଜି ଦିନର ବର୍ତ୍ତମାନ କ୍ଷଣ ପର୍ଯ୍ୟନ୍ତ କୌଣସି ବି ଦେହଧାରୀ ଜୀବାତ୍ମାର ମନ-ବଚନ-କାୟା ପ୍ରତି, ଜାଣତ-ଅଜାଣତରେ ଯେଉଁ ଅନନ୍ତ ଦୋଷ କରିଛି, ସେହି ପ୍ରତ୍ୟେକ ଦୋଷକୁ ଦେଖି, ତାହାର ପ୍ରତିକ୍ରମଣ କରିବା ପାଇଁ ମୋତେ ଶକ୍ତି ଦିଅନ୍ତୁ । ଏହି ସବୁ ଦୋଷର ମୁଁ ଆପଣଙ୍କଠାରେ କ୍ଷମା-ପ୍ରାର୍ଥନା କରୁଛି । ଆଲୋଚନା, ପ୍ରତିକ୍ରମଣ, ପ୍ରତ୍ୟାଖ୍ୟାନ କରୁଛି । ହେ ପ୍ରଭୁ! ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ । ଏବଂ ମୋ ଦ୍ୱାରା ପୁଣି ଏପରି ଦୋଷ କେବେ ମଧ୍ୟ ହେବ ନାହିଁ, ଏପରି ଦୃଢ଼ ନିର୍ଧାର କରୁଛି । ଏଥିପାଇଁ ମୋତେ ଜାଗୃତି ଦିଅନ୍ତୁ, ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ନିଜର ପ୍ରତ୍ୟେକ ପାବନ ପଦଚିହ୍ନରେ ତୀର୍ଥର ସ୍ଥାପନା କରିବାବାଲା ହେ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ ପ୍ରଭୁ ! ସଂସାରର ସବୁ ଜୀବଙ୍କ ପ୍ରତି ସଂପୂର୍ଣ୍ଣ ଅବିରାଧକ ଭାବ ଏବଂ ସବୁ ସମକିତୀ ଜୀବଙ୍କ ପ୍ରତି ସଂପୂର୍ଣ୍ଣ ଆରାଧକ ଭାବ, ମୋ ହୃଦୟରେ ସଦା ସଂସ୍ଥାପିତ ରହୁ, ସଂସ୍ଥାପିତ ରହୁ, ସଂସ୍ଥାପିତ ରହୁ ! ଭୂତ, ଭବିଷ୍ୟ ଏବଂ ବର୍ତ୍ତମାନ କାଳର ସର୍ବ କ୍ଷେତ୍ରର ସର୍ବ ଜ୍ଞାନୀ ଭଗବନ୍ତଙ୍କୁ ମୋର ନମସ୍କାର, ନମସ୍କାର, ନମସ୍କାର । ହେ ପ୍ରଭୁ ! ଆପଣ ମୋ ଉପରେ ଏପରି କୃପା ବର୍ଷାନ୍ତୁ ଯାହାଦ୍ୱାରା ମୋତେ ଏହି ଭରତକ୍ଷେତ୍ରରେ ଆପଣଙ୍କ ପ୍ରତିନିଧି ସମାନ କେହି ଜ୍ଞାନୀପୁରୁଷଙ୍କର, ସତ୍‌ପୁରୁଷଙ୍କର ସତ୍ ସମାଗମ ହେଉ ଏବଂ ତାଙ୍କ କୃପାଧିକାରୀ ହୋଇ ଆପଣଙ୍କ ଚରଣ କମଳ ପର୍ଯ୍ୟନ୍ତ ପହଞ୍ଚିବାର ପାତ୍ରତା ପ୍ରାପ୍ତ ହେଉ ।

ହେ ଶାସନ ଦେବା-ଦେବୀ ! ହେ ପାଞ୍ଚାଙ୍ଗୁଳି ଯକ୍ଷିଣୀଦେବୀ ତଥା ହେ ଚାନ୍ଦ୍ରାୟଣ

ଯକ୍ଷଦେବ ! ହେ ଶ୍ରୀ ପଦ୍ମାବତୀ ଦେବୀ ! ମୋତେ ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ଚରଣ କମଳରେ ସ୍ଥାନ ପାଇବାର ମାର୍ଗରେ କୌଣସି ବିଘ୍ନ ନ ଆସୁ, ଏପରି ଅଭୂତପୂର୍ବ ରକ୍ଷଣ ପ୍ରଦାନ କରିବାରେ କୃପା କରନ୍ତୁ ଏବଂ କେବଳଜ୍ଞାନ ସ୍ୱରୂପରେ ହିଁ ରହିବା ପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ !



## ଶ୍ରୀ ସୀମନ୍ଧର ସ୍ୱାମୀଙ୍କ ଆରତୀ

ଜୟ 'ସୀମନ୍ଧର ସ୍ୱାମୀ', ପ୍ରଭୁ ତୀର୍ଥଙ୍କର ବର୍ତ୍ତମାନ,
ମହାବିଦେହ କ୍ଷେତ୍ରେ ବିଚରତା, (୨) ଭରତ ଋଣାନୁବନ୍ଧ । ଜୟ...

'ଦାଦା ଭଗବାନ' ସାକ୍ଷୀଏ, ପହୋଞ୍ଚାଡୁ ନମସ୍କାର ...(ସ୍ୱାମୀ)(୨)
ପ୍ରତ୍ୟକ୍ଷ ଫଳ ପାମୁଁ ହୁଁ, (୨) ମାଧ୍ୟମ ଜ୍ଞାନ ଅବତାର । ଜୟ...

ପହେଲୀ ଆରତୀ ସ୍ୱାମୀନୀ, ଓଁ ପରମେଷ୍ଠି ପାମେ ...(ସ୍ୱାମୀ)(୨)
ଉଦାସୀନ ବୃତ୍ତି ବହେ, (୨) କାରଣ ମୋକ୍ଷ ସେବେ । ଜୟ...

ବୀଜୀ ଆରତୀ ସ୍ୱାମୀନୀ, ପଞ୍ଚ ପରମେଷ୍ଠି ପାମେ ...(ସ୍ୱାମୀ)(୨)
ପରମହଂସ ପଦ ପାମୀ, (୨) ଜ୍ଞାନ-ଅଜ୍ଞାନ ଲଣେ । ଜୟ...

ତ୍ରୀଜୀ ଆରତୀ ସ୍ୱାମୀନୀ, ଗଣଧର ପଦ ପାମେ ...(ସ୍ୱାମୀ)(୨)
ନିରାଶ୍ରିତ ବନ୍ଧନ ଛୁଟେ, (୨) ଆଶ୍ରିତ ଜ୍ଞାନୀ ଥୟେ । ଜୟ...

ଚୌଥୀ ଆରତୀ ସ୍ୱାମୀନୀ, ତୀର୍ଥଙ୍କର ଭାବି ...(ସ୍ୱାମୀ)(୨)
ସ୍ୱାମୀ ସତ୍ତା 'ଦାଦା' କନେ, (୨) ଭରତ କଲ୍ୟାଣ କରେ । ଜୟ....

ପଞ୍ଚମୀ ଆରତୀ ସ୍ୱାମୀନୀ, କେବଳ ମୋକ୍ଷ ଲହେ ...(ସ୍ୱାମୀ)(୨)
ପରମ ଜ୍ୟୋତି ଭଗବନ୍ତ 'ହୁଁ', (୨) ଅୟୋଗୀ ସିଦ୍ଧପଦେ । ଜୟ....

ଏକ ସମୟ ସ୍ୱାମୀ ଖୋଳେ ଯେ, ମାଥୁଁ ଢାଳି ନମଶେ...(ସ୍ୱାମୀ)(୨)
ଅନନ୍ୟ ଶରଣୁ ସ୍ୱୀକାରୀ, (୨) ମୁକ୍ତି ପଦନେ ବରେ । ଜୟ....



# ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରକାଶିତ ପୁସ୍ତକ

## ଓଡ଼ିଆ ପୁସ୍ତକ

୧. ଆତ୍ମସାକ୍ଷାତ୍କାର
୨. ଚିନ୍ତା
୩. କ୍ରୋଧ
୪. ମାନବ ଧର୍ମ
୫. ମୁଁ କିଏ ?
୬. ତ୍ରିମନ୍ତ୍ର
୭. ପାପ-ପୁଣ୍ୟ
୮. ସେବା ପରୋପକାର
୯. ପ୍ରତିକ୍ରମଣ
୧୦. କର୍ମର ବିଜ୍ଞାନ
୧୧. ଜଗତ କର୍ତ୍ତା କିଏ ?
୧୨. କର୍ମର ସିଦ୍ଧାନ୍ତ
୧୩. ଘର୍ଷଣ ଟାଳନ୍ତୁ
୧୪.ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୧୫. ଅହିଂସା
୧୬. ଯିଏ ଭୋଗେ ତା'ର ଭୁଲ
୧୭. ଯାହା ହେଲା ତାହା ନ୍ୟାୟ
୧୮. ଭାବନା ସୁଧାରେ ଜନ୍ମୋଜନ୍ମ
୧୯. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୨୦. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୨୧. ଅନ୍ତଃକରଣର ସ୍ୱରୂପ
୨୨. ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ(ସଂ.)

❖ ଦାଦା ଭଗବାନଙ୍କ ପୁସ୍ତକ ଅନ୍ୟ ଭାଷାରେ ମଧ୍ୟ ଉପଲବ୍ଧ ଅଛି : ଗୁଜୁରାତି, ହିନ୍ଦୀ, ଇଂରାଜୀ, ମରାଠୀ, ତେଲୁଗୁ, ମାଲାୟଲମ୍,ବଙ୍ଗାଳି,ପଞ୍ଜାବୀ, ଆସାମୀ, ତାମିଲ, ଜର୍ମାନ, ସ୍ପାନିସ୍, ଋଷିଆ ଇତ୍ୟାଦି ।

❖ ଦାଦା ଭଗବାନ ଫାଇଣ୍ଡେସନ୍ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜୁରାତି ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

❖ ସମସ୍ତ ଦାଦା ଭଗବାନଙ୍କ ପୁସ୍ତକ ଏବଂ ମାଗାଜିନ୍ ଅନଲାଇନ୍ ପୁସ୍ତକ ଭଣ୍ଡାରରେ ମଧ୍ୟ ଉପଲବ୍ଧ ଅଛି : https:// store.dadabhagwan,org.

# ସମ୍ପର୍କ ସୂତ୍ର

## ଦାଦା ଭଗବାନ ପରିବାର

| | | |
|---|---|---|
| ଅଡ଼ାଲଜ (ମୁଖ୍ୟ କେନ୍ଦ୍ର) | : | ତ୍ରିମନ୍ଦିର, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ,ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-382421<br>ଫୋନ- 9328661166/77<br>**Email :** info@dadabhagwan.org |
| ମୁମ୍ବାଇ | : | ତ୍ରିମନ୍ଦିର, ଋଷିବନ, କାଜୁପାଡା, ବୋରିବଲି (E)<br>ଫୋନ-9323528901 |

| | | | | | |
|---|---|---|---|---|---|
| ଦିଲ୍ଲୀ | : | 9810098564 | ବେଙ୍ଗାଲୁରୁ | : | 9590979099 |
| କୋଲକତା | : | 9830093230 | ହାଇଦ୍ରାବାଦ | : | 9885058771 |
| ଚେନ୍ନାଇ | : | 7200740000 | ପୁନେ | : | 7218473468 |
| ଜୟପୁର | : | 8890357990 | ଜଲନ୍ଧର | : | 9814063043 |
| ଭୋପାଳ | : | 6354602399 | ଚଣ୍ଡିଗଡ | : | 9780732237 |
| ଇନ୍ଦୋର | : | 6354602400 | କାନପୁର | : | 9452525981 |
| ରାୟପୁର | : | 9329644433 | ବାରାଣସୀ | : | 9795228541 |
| ପାଟନା | : | 7352723132 | କଟକ | : | 8763090042 |
| ଅମରାବତୀ | : | 9422915064 | ଭୁବନେଶ୍ୱର | : | 8763073111 |

| | | |
|---|---|---|
| **U.S.A** | : | **DBVI, Tel . :**+1 877-505-DADA (3232),<br>**Email :** info@us.dadabhagwan.org |
| **U.K.** | : | +44 330-111-DADA (3232) |
| **Kenya** | : | +254 795-92-DADA (3232) |
| **UAE** | : | +971 557316937 |
| **Dubai** | : | +971 501364530 |
| **Australia** | : | +61 402179706 |
| **New Zealand** | : | +64 21 0376434 |
| **Singapore** | : | +65 91457800 |

**www.dadabhagwan.org**



## ସୀମନ୍ଧର ସ୍ୱାମୀ

ଘରେ ଘରେ ସୀମନ୍ଧର ସ୍ୱାମୀଙ୍କ ପୂଜା-ଆରତୀ ହେବ, ସବୁ ଜାଗାରେ ସୀମନ୍ଧର ସ୍ୱାମୀଙ୍କର ମନ୍ଦିର ନିର୍ମାଣ ହେବ ସେତେବେଳେ ଦୁନିଆର ନକ୍ସା କିଛି ଅଲଗା ହୋଇଯିବ !

- ପୂଜ୍ୟ ଶ୍ରୀ ଦାଦା ଭଗବାନ



dadabhagwan.org



Printed in India

Price ₹ 40